

# ଶ୍ରୀ ଚନ୍ଦ୍ରେଶ୍ୱର ମିଶ୍ର

## ସ୍ମରଣେ



৺ ଶ୍ରୀ ଚନ୍ଦ୍ରେଶ୍ୱର ମିଶ୍ର

ଆବିର୍ଭାବ ୧୯୦୫ ତିରୋଧାନ ୧୯୭୪

# 'ଶ୍ରୀ ଚଣ୍ଡେଶ୍ୱର ମିଶ୍ର ସ୍ମରଣେ'

(ତ୍ରୟୋବିଂଶ ଶ୍ରାଦ୍ଧ ବାର୍ଷିକୀ ସ୍ମରଣିକା)

ସଂଗ୍ରାହକ : ଉମା ଶଙ୍କର ମିଶ୍ର

ପ୍ରକାଶକାଳ : ୧୯୯୭

ପ୍ରକାଶିକା : ଶ୍ରୀମତୀ ଅଞ୍ଜଳୀ କୁମାରୀ ଦେବୀ, ନୟାଗଡ଼

ମୁଦ୍ରଣ : ମା' ତାରତାରିଣୀ ପ୍ରିଣ୍ଟର୍ସ
ସୂତାହାଟ, କଟକ-୧

**SRI CHANDESWAR MISHRA SMARANE**

Compiled by : **Sri Uma Shankar Mishra**
VIP Plot 158, NAYAPALLI, Bhubaneswar

First Edition : 1997

Printed by : **Maa Taratarini Printers**
Sutahat, ctc.-1



୮ ଶ୍ରୀ ଚନ୍ଦ୍ରେଶ୍ୱର ମିଶ୍ର, ପତ୍ନୀ ଶ୍ରୀମତୀ ଚଞ୍ଚଳା କୁମାରୀ ଦେବୀ
( କନିଷ୍ଠ ପୁତ୍ର ଦେବୀ ପ୍ରସନ୍ନ ସହ )

# ସୂଚୀ



## ବିଶିଷ୍ଟ ବ୍ୟକ୍ତିଙ୍କ ସ୍ମୃତି ଚାରଣ

**ବିଷୟ** **ପୃଷ୍ଠା**

## ଶ୍ରୀ ମିଶ୍ରଙ୍କ ସମ୍ପର୍କିତ ପ୍ରକାଶିତ ନିବନ୍ଧ



## ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କ ସାହିତ୍ୟକୃତିର କେତୋଟି ନିଦର୍ଶନ



## ଶେଷରେ





# ସ୍ୱର୍ଗତ ଶ୍ରୀ ଚଣ୍ଡେଶ୍ୱର ମିଶ୍ର

## ତ୍ରୟୋବିଂଶ ଶ୍ରାଦ୍ଧ ତିଥିର ସ୍ମୃତିତର୍ପଣ

୬୯ ବର୍ଷ ବୟସରେ ୧୯୭୪ ମସିହା ଜୁନ୍ ମାସ ଦୁଇ ତାରିଖରେ ସ୍ୱର୍ଗାରୋହଣ କରିଥିବା ସ୍ୱନାମଧନ୍ୟ କୃତବିଦ୍ୟ ଦେଶପ୍ରେମୀ ଆଇନଜ୍ଞ ଓ ବୁଦ୍ଧିଜୀବୀ ମୋର ପିତା ଶ୍ରୀଯୁକ୍ତ ଚଣ୍ଡେଶ୍ୱର ମିଶ୍ରଙ୍କ ତ୍ରୟୋବିଂଶ ଶ୍ରାଦ୍ଧ ବାସରରେ ତାଙ୍କର ସ୍ମୃତିଚାରଣ କେବଳ ରଣପୁର ଓ ନୟାଗଡ଼ ଅଞ୍ଚଳର ନୁହେଁ, ସାରା ଓଡ଼ିଶାର ଏକ ବୌଦ୍ଧିକ କର୍ତ୍ତବ୍ୟ ବୋଲି ବୋଧହୁଏ । ଜଣେ ସ୍ୱାଧୀନଚେତା ସ୍ପଷ୍ଟବାଦୀ ସତ୍ୟନିଷ୍ଠ ବ୍ୟକ୍ତି, ନୀତିବାଦୀ ପାରଙ୍ଗମ ଆଇନଜ୍ଞ ତଥା ଉଚ୍ଚକୋଟୀର ଲେଖକ ଓ ପ୍ରାବନ୍ଧିକ ହିସାବରେ ସେ ପ୍ରତିଷ୍ଠା ଲାଭ କରିଥିଲେ । ତାଙ୍କର ବିଭିନ୍ନ ଲେଖା ସେ ସମୟରେ ଉତ୍କଳ ସାହିତ୍ୟ, ନବଭାରତ, ସହକାର ଇତ୍ୟାଦି ପତ୍ରିକା ଓ ସମ୍ବାଦପତ୍ରମାନଙ୍କରେ ତାଙ୍କର ବିଚାର ଆଲୋଚନା ଓ ପ୍ରବନ୍ଧମାନ ପ୍ରକାଶ ପାଉଥିଲା । ଏଥିରୁ କେତୋଟି ଲେଖା କଲେଜ ଓ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରେ ସ୍ଥାନ ପାଇଛି । ସ୍ୱର୍ଗତ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଶ୍ରୀ ମିଶ୍ରଙ୍କର ଚରିତ୍ରବତ୍ତା ଓ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ଏବଂ ଡକ୍ଟର୍ ମାୟାଧର ମାନସିଂହ ତାଙ୍କର ସାହିତ୍ୟ ସୃଷ୍ଟିରେ ଶ୍ରୀ ମିଶ୍ରଙ୍କୁ ତାଙ୍କ ପ୍ରେରଣାର ଉତ୍ସ ଭାବରେ ବର୍ଣ୍ଣିତ କରିଛନ୍ତି ।

ଏହି ସ୍ମରଣିକାରେ ସଂକଳିତ ବିଶିଷ୍ଟ ବ୍ୟକ୍ତିମାନଙ୍କ ସ୍ମୃତି ଚାରଣରୁ ଶ୍ରୀ ମିଶ୍ରଙ୍କ ଜୀବନ କାଳର ବହୁ ଭୂମିକା ଓ ଅବଦାନ ଚୁମ୍ବକରେ ଉନ୍ମୋଚିତ ହୋଇଛି । ପ୍ରଜା ଆନ୍ଦୋଳନ ତଥା ଗଡ଼ଜାତମାନଙ୍କ ସମସ୍ୟାବଳିର ବହୁ ଅନାଲୋକିତ ଦିଗନ୍ତ ଏ ପର୍ଯ୍ୟନ୍ତ ଅସ୍ପଷ୍ଟ ରହିଛି ଯାହାର ବିମୋଚନ ଦାୟିତ୍ୱ ବର୍ତ୍ତମାନ ଓ ଭବିଷ୍ୟତର ନିଷ୍ଠାପର ଗବେଷକ ଓ ଐତିହାସିକମାନଙ୍କ ହାତରେ । ତେବେ ଯେତେବେଳେ ମୋ ପିତାଙ୍କ ସମସାମୟିକ ପ୍ରବୁଦ୍ଧ ପୁରୁଷମାନେ ଏହି

ପୁସ୍ତିକାରେ ତାଙ୍କର ବ୍ୟକ୍ତିତ୍ୱର ଆକଳନ କରିଛନ୍ତି ତା ସହିତ ମୋ ଅନୁଭୂତିରୁ କେତୋଟି କ୍ଷୁଦ୍ର ପ୍ରସଙ୍ଗ ବାଢ଼ିବା ଅସମୀଚିନ ହେବ ନାହିଁ ।

ମୋତେ ସେତେବେଳେ ପ୍ରାୟ ନଅ ଦଶ ବର୍ଷ । ନନାଙ୍କ ( ଚଣ୍ଡେଶ୍ୱର ମିଶ୍ର ) ସଙ୍ଗେ କଟକ ଯାଇଥାଏ ଦଶହରା ଦେଖିବା ପାଇଁ । ନନା ମତେ ନେଇଗଲେ ଦରଘାବଜାର ଅଞ୍ଚଳର ଏକ କୋଠା ଘରକୁ । ସେଇ ଘରେ ପଣ୍ଡିତ ଗୋଦାବରୀଶ ମିଶ୍ର ରହୁଥିଲେ । ତାଙ୍କ ତୁହିନ ଧବଳ ଉଜ୍ୱଳ ବ୍ୟକ୍ତିତ୍ୱ ଆଉ ସୂର୍ଯ୍ୟକିରଣ ପରି ଝଲୁଥିବା ଆଖି ଦୁଇଟାକୁ ଚାହିଁଦେଇ ମୁଁ ଭୟ ପାଇଗଲି । ସେ ମୋତେ ନନାଙ୍କ ପାଖରୁ ନିଜ ପାଖକୁ ଟାଣିନେଲେ । ମଥା ସାଉଁଳେଇ ପଚାରିଲେ, ବଡ଼ ହେଲେ କିପରି ମଣିଷ ହେବ ? ମୁଁ ଉତ୍ତର ଦେବି କଣ, ନନାଙ୍କ ଆଡ଼କୁ ବଲ୍ ବଲ୍ କରି ଅନେଇଁ ରହିଲି । ପଣ୍ଡିତ ଗୋଦାବରୀଶ ହସି ହସି କହିଲେ 'ବାପା ଠିକ୍ ଲୋକକୁ ଚାହିଁଚୁ । ତୋ ନନାଙ୍କ ପରି ନିର୍ମଳ ଚରିତ୍ରର ଲୋକ ହବୁତ ବଡ଼ ହେଲେ ! କାହାକୁ ଭୟ କରିବୁନି । ସାହାସୀ ହବୁ ସତ କହିବୁ ।' ସେଦିନୁଁ ମୋର ଏକ ପ୍ରତ୍ୟୟ ଦାନା ବାନ୍ଧିଲା ମନ ଭିତରେ । ମୋ' ନନା ( ଚଣ୍ଡେଶ୍ୱର ମିଶ୍ର ) ଜଣେ ତେଜୀୟାନ୍ ମଣିଷ । ପଣ୍ଡିତ ଗୋଦାବରୀଶ ଖୋଦ୍ ଯେତେବେଳେ କହିଚନ୍ତି ।

ଆଉ ଗୋଟିଏ ଅନୁଭୂତି । ଗାଁ ସ୍କୁଲରେ ତୃତୀୟ ଶ୍ରେଣୀରେ ପାଠ ପଢ଼ୁଥାଏ । ନନାଙ୍କ ସାଙ୍ଗ ଜଣେ ବଡ଼ ପାଠୁଆ ହାକିମ ମାୟାଧର ମାନସିଂହ ଆମ ସ୍କୁଲ ପରିଦର୍ଶନ ପାଇଁ ଆସୁଛନ୍ତି ବୋଲି ଶୁଣିଲୁ । ମାନସିଂ ସାହେବ ପଶି ଆସିଲେ ଆମ ଶ୍ରେଣୀକୁ । ନନା ତାଙ୍କ ସାଙ୍ଗରେ । ମତେ ଦେଖାଇ କହିଲେ 'ଚଣ୍ଡୀ ଏଇ ତମ ପୁଅଟି ।' ମତେ କହିଲେ ଲେଖ କେମିତି ବନାନ୍ ଶିଖିଚ । 'ସଂସାରରେ ସମସ୍ତେ ଦୁଃଖୀ' । ମୁଁ ସିଲେଟରେ ଖଡ଼ି ଦେଇଚି ତ ନନାଙ୍କ ଅଳ୍ପ ଉଚ୍ଚ ଗଳାରେ ଚମକି ପଡ଼ିଲି । ନନା କହୁଚନ୍ତି 'ଏତେ ଛୋଟ ପିଲାଙ୍କ ମଥାରେ କାହିଁକି 'ଦୁଃଖୀ' ଶବଦଟା ଭର୍ତ୍ତି କରୁଚ । ସେଥିପାଇଁ ତ ଜୀବନଟାଯାକ ପଡ଼ିଚି ।' ମାନସିଂ ସାହେବ ଟିକିଏ ହସିଦେଲେ । କହିଲେ 'ନହେଲେ ଲେଖ । ସଂସାରରେ କେହି ଦୁଃଖୀ ନାହାନ୍ତି ।' କାଲିଭଳି ଏ କଥାଟା ମୋ ମଥା ଭିତରେ ସତେଜ ହେଇ ରହିଛି । ଏବେ ପାକଳ ବୟସରେ ବେଶୀ ମନେ ପଡ଼ୁଚି । ଖୁବ୍ ଉଲ୍ଲସିତ ହେଲି ଯୋଉଦିନ ପଢ଼ିଲି 'ଓଡ଼ିଆ ସାହିତ୍ୟର ଇତିହାସ'ର ପ୍ରବୀଣ ଲେଖକ କବି ମାନସିଂହ ତାଙ୍କ 'ଭୂମିକା'ର ପ୍ରଥମ ଭାଗରେ ନନାଙ୍କ ସାରସ୍ୱତ ସମ୍ପର୍କ କଥା ଏହିପରି ଲେଖିଛନ୍ତି ।

: କୌଣସି ଇତିହାସ, ପୁଣି ବିଶେଷକରି 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖିବାର କଳ୍ପନା ବା ବାସନା ଏହି ଲେଖକର ସ୍ୱପ୍ନରେ ମଧ୍ୟ କେବେ ଦେଖା ଦେଇ ନ ଥିଲା ।

ରେଭେନ୍‌ସା କଲେଜରେ ଛାତ୍ର ଥିଲାବେଳେ ରଣପୁରର ସହପାଠୀ ବନ୍ଧୁ ଶ୍ରୀ ଚଣ୍ଡେଶ୍ୱର ମିଶ୍ର ( ବର୍ତ୍ତମାନ ସେ ଅଞ୍ଚଳର ପ୍ରସିଦ୍ଧ ଆଡ଼ଭୋକେଟ୍ ) କଥା ପ୍ରସଙ୍ଗରେ କିନ୍ତୁ ଥରେ କହିଥିଲେ—"ମାନସିଂ, ତମେ ଦିନେ ଇଂରାଜୀରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବ ।" ପ୍ରାୟ ଚାଳିଶ ବର୍ଷ ତଳର ତାଙ୍କର ବାଣୀ ଏପରି ଝଡ଼-ଝଞ୍ଜା ସହିତ ସଫଳତା ଲାଭ କରିବ ବୋଲି କିଏ ଭାବିଥିଲା ? ବନ୍ଧୁ ମିଶ୍ରେ ଏକଥା କହିଥିଲେ ବୋଧହୁଏ, ସେତେବେଳେ ଏହି ଲେଖକ ଇଂରାଜୀ ସାହିତ୍ୟର ଉତ୍ସାହୀ ଛାତ୍ର ଥିବା ଯୋଗୁଁ । ଇଂରାଜୀ ସାହିତ୍ୟକୁ ଭଲ ରୂପେ ଜାଣିବା ପାଇଁ ଇଂରାଜୀ ସାହିତ୍ୟର ଇତିହାସକୁ ଉତ୍ତମ ଭାବରେ ଆୟତ୍ତ କରିବା ନିତାନ୍ତ ଦରକାର । ଇଂରାଜୀ ସାହିତ୍ୟର ବହୁ ଇତିହାସ ବଜାରରେ ମିଳିବ । ସେଥିରୁ ଅନ୍ତତଃ କେତୋଟି ନିଜେଇ ଏକ ଏକ ସାହିତ୍ୟ—ଅତି ସୁଖପାଠ୍ୟ ଓ ଶିକ୍ଷାପ୍ରଦ ଗ୍ରନ୍ଥ । ଏବେବି ଏ ଲେଖକର ଅବସର ବିନୋଦନ ଭିତରେ ଥାଏ, ବେଳେବେଳେ ଇଂରାଜୀ ସାହିତ୍ୟର କୌଣସି ନା କୌଣସି ଇତିହାସ ଗ୍ରନ୍ଥ । ଅବଶ୍ୟ ତାହା ସାଥିରେ ଥାଏ ମଧ୍ୟ ଗ୍ରୀକ୍, ଜର୍ମାନ୍ ଆଦି ଅନ୍ୟ ଉନ୍ନତ ବୈଦେଶିକ ଭାଷାମାନଙ୍କର ଇତିହାସ । କାରଣ, କେବଳ ସାହିତ୍ୟର ଇତିହାସ ହିଁ ଦେବ ଯେ କୌଣସି ଜାତିର ଆତ୍ମାର ଇତିହାସ, ତାର ପ୍ରକୃତ ମର୍ମ ବାଣୀ ।'

ସହପାଠୀ ବନ୍ଧୁ ମିଶ୍ରେ ମତେ ସେତେବେଳେ ଇଂରାଜୀରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବାକୁ ଯେ କହିଥିଲେ, ତାହା ବୋଧହୁଏ ସେତେ-ବେଳେ ମୁଁ ପଢ଼ୁଥିବା ଇଂରାଜୀ ସାହିତ୍ୟର ଗ୍ରେଟ ବା ମୋଟ ; କିନ୍ତୁ ସୁଲିଖିତ ଓ ସୁପାଠ୍ୟ ଇତିହାସ ସବୁ ଦେଖି ଦେଖି ଓ ମନେ ମନେ ଭାବି, "ଏପରି ଖଣ୍ଡିଏ ବହି ଓଡ଼ିଆ ସାହିତ୍ୟରେ ଥାଆନ୍ତା କି !"

ତାପରେ ଆଉ ଏକ ପୁସ୍ତକରେ ପଢ଼ିଲି 'ରେଭେନ୍‌ସା କଲେଜରେ ସର୍ବଶ୍ରୀ ମାୟାଧର ମାନସିଂହ, ରତ୍ନାକର ଷଡ଼ଙ୍ଗୀ, ଚଣ୍ଡେଶ୍ୱର ମିଶ୍ର, ସଂଗ୍ରାମ କେଶରୀ ରାୟ, ଉଦୟନାଥ ରଥ ପ୍ରମୁଖ ଉତ୍ସାହୀ ଛାତ୍ର ମିଶି 'ପ୍ରଗତି ସଂଘ' ଗଢ଼ିଥିଲେ । ମାନସିଂହଙ୍କ ପ୍ରଥମ ଦୁଇ ପୁସ୍ତକ 'ରାଜକବି' ଓ 'ଧୂପ' ଏଇ ପ୍ରଗତି ସଂଘ ପକ୍ଷରୁ

ପ୍ରକାଶ ପାଇଥିଲା । ୧୯୩୩-୩୪ ମସିହାରେ ଏଇ ପ୍ରଗତି ସଂଘ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯଥେଷ୍ଟ ଆଲୋଡ଼ନ ସୃଷ୍ଟି କରି ପାରିଥିଲା ।

ନନାଙ୍କ ବ୍ୟକ୍ତିତ୍ୱର ଆଉ ଏକ ଝଲକ ଉଦ୍ଧାର କରୁଛି । ସମାଜସେବୀ ଶିକ୍ଷା ସାଧକ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ଜୀବନୀ 'ମୋ ବାରବୁଲା ଜୀବନ' ପୁସ୍ତକ ୧୩୦ ପୃଷ୍ଠାରୁ ।

: ଶ୍ରୀ ଚଣ୍ଡେଶ୍ୱର ମିଶ୍ର ସେତେବେଳେ ବାଙ୍କୀ ସ୍କୁଲରୁ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଇଥାଏ । ମୁଁ ବାଙ୍କୀରେ ପଢ଼ାଉଥିଲି । ପିଲାଏ କହିଲେ, ଚଣ୍ଡେଶ୍ୱରଟି ଭଲ ପିଲା । ଆଉ ବେଶୀ କିପରି ପଢ଼ନ୍ତା । ମୁଁ କହିଲି, ବେଶୀ ପଢ଼ିବାର ଇଚ୍ଛା ଥିଲେ ପଢ଼ିବ । ସେଥିରେ ଅସୁବିଧା କ'ଣ ? ମୁଁ ବାଙ୍କୀ ଛାଡ଼ିଲା ବେଳେ ପିଲାମାନେ ମୋତେ ଧରି ବସିଲେ ମୁଁ ଚଣ୍ଡେଶ୍ୱରକୁ କହିଲି, ଚାଲ, ମୋ ସାଙ୍ଗରେ କଟକକୁ । ଚଣ୍ଡେଶ୍ୱର କଟକ ଆସିଲା—କଟକରେ ମୋ ପାଖରେ କିଛି ସମୟ ରହିଲା । ବଡ଼ କଷ୍ଟରେ କଲେଜକୁ ଯିବା ଆସିବା କରୁଥାଏ । ଦେଉଳ ସାହିରୁ ରେଭେନ୍ସା କଲେଜ ଚାରି ମାଇଲ୍ । ଯାହାହେଉ ପରେ ସୁବିଧା ହୋଇଗଲା । ସେଇ ଚଣ୍ଡେଶ୍ୱର ଥରେ ମୋତେ କେତେ ଟଙ୍କା ମନିଅର୍ଡ଼ର କରି ପଠାଇଲା ଏବଂ ଚିଠିରେ ଲେଖିଲା—ସାର୍, ଆପଣଙ୍କ ପାଖକୁ ଅନେକ ପିଲା ସାହାଯ୍ୟ ପାଇଁ ଆସୁଥିବେ, ହଠାତ୍ ଏହି କଥା ଭାବି ଅଭିଭୂତ ହେଲି ଏବଂ ସେଥିପାଇଁ ଏହି ସାମାନ୍ୟ ଟଙ୍କା ପଠାଇଲି । ଚଣ୍ଡେଶ୍ୱର ଯେଉଁ ଟଙ୍କା ପଠାଇ-ଥିଲା ସେହି ଟଙ୍କା କାହାକୁ କିପରି ଦେଲି ରସିଦ୍ ସହ ପଠାଇ ଦେଲି । ସେଥିରେ ଚଣ୍ଡେଶ୍ୱର କ୍ଷୁବ୍‌ଧ ହେଲା ଏବଂ ଚିଠି ଲେଖିଲା, ସାର୍, ମୁଁ କଣ ଆପଣଙ୍କଠାରୁ ରସିଦ୍ ଚାହିଁଥିଲି ?

ମୁଁ ଲେଖିଲି, 'ନା ଚଣ୍ଡେଶ୍ୱର, ତୁମର ଟଙ୍କାର କି ପ୍ରକାର ଉପଯୋଗ ହୋଇଛି, ତାହା ତୁମକୁ ଜଣାଇବା ପାଇଁ ସେହି ରସିଦ୍ ସବୁ ପଠାଇଥିଲି । ଚଣ୍ଡେଶ୍ୱର ଏହିପରି ପ୍ରକୃତିର ଲୋକ ।'

ରଣପୁର ଷ୍ଟେଟ୍‌ର ସହକାରୀ ଦେଓ୍ୱାନ୍ ଥିବାବେଳେ ତତ୍‌କାଳୀନ ରାଜତନ୍ତ୍ରୀ ଶାସନରେ ଅନାହାର ବେଠି ବେଗାରୀ ଓ ଶୋଷଣରୁ ପ୍ରଜାମାନଙ୍କୁ ମୁକ୍ତ ରଖିବା ପାଇଁ ସେ ବହୁ ପରୋକ୍ଷ ଓ ପ୍ରତ୍ୟକ୍ଷ ପ୍ରୟାସ କରିଥିଲେ । ରଣପୁରର ପ୍ରଜା ଆନ୍ଦୋଳନ ସମୟରେ ମେଜର ବେଜେଲ୍‌ଗେଟ୍ ହତ୍ୟାକାଣ୍ଡ

ପରେ ଇଂରେଜ ସରକାରଙ୍କ ପ୍ରତି ତାଙ୍କର ପରିପନ୍ଥୀ ଆନୁଗତ୍ୟ—ସନ୍ଦେହର ଶରବ୍ୟ ହେଇ ସେ ରାଜକାର୍ଯ୍ୟ ପରିହାର କରି ପ୍ରଥମେ ରଣପୁର ଓ ପରେ ନୟାଗଡ଼ରେ ଓକିଲତି କଲେ । ପ୍ରଜା ଆନ୍ଦୋଳନ ତଥା ସ୍ୱାଧୀନତା ସଂଗ୍ରାମ ପ୍ରତି ତାଙ୍କର ନିବିଷ୍ଟ ସହଯୋଗ ଏବଂ ସହାନୁଭୂତି ଥିଲା । ଯେଉଁ ଅଳ୍ପ କେତେ ଜଣ ଗଡ଼ଜାତବାସୀ ରାଜକାର୍ଯ୍ୟ ସତ୍ତ୍ୱେ ମୋଗଲ ବନ୍ଦୀ ତଥା ଜାତୀୟ ସ୍ତରର କଂଗ୍ରେସ ନେତାମାନଙ୍କ ସହିତ ସାକ୍ଷାତ ସମ୍ପର୍କ ରକ୍ଷା କରିବାକୁ ସାହାସ ବାନ୍ଧି-ଥିଲେ ତାଙ୍କ ଭିତରେ ଶ୍ରୀ ମିଶ୍ର ଥିଲେ ଅଗ୍ରଣୀ ଓ ଅନ୍ୟତମ । ସଚ୍ଚୋଟ ଆଉ ସ୍ପଷ୍ଟବାଦୀ ଥିବାରୁ ତାଙ୍କ ଉପରେ ମୋଗଲବନ୍ଦୀର ନେତୃସ୍ଥାନୀୟ ଲୋକେ ଯେପରି ନିର୍ଭର କରି ପାରୁଥିଲେ ଗଡ଼ଜାତର ଦେଶପ୍ରେମୀ ସମାଜସେବୀ ଲୋକେ ସେପରି ତାଙ୍କ ନିର୍ଦ୍ଦେଶ ଓ ପରାମର୍ଶ ମାନୁଥିଲେ । ଦେଶରେ ସ୍ୱାଧୀନତା ଆନ୍ଦୋଳନର ଏକ ଲୋମହର୍ଷଣକାରୀ ସନ୍ଧିକ୍ଷଣରେ ପଲିଟିକାଲ୍ ଏଜେଣ୍ଟ ତଥା ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଗଡ଼ଜାତର ପ୍ରକୃତ ଅବସ୍ଥା ଜଣାଇବା ପାଇଁ ବହୁ କୌଶଳରେ ରାଜ ଗୋଷ୍ଠୀଙ୍କ କୋପଦୃଷ୍ଟି ଏଡ଼ାଇ ଶ୍ରୀ ମିଶ୍ର କଂଗ୍ରେସ ଓ ଅନ୍ୟାନ୍ୟ ନେତୃବର୍ଗଙ୍କ ସହିତ ପ୍ରଜା ଆନ୍ଦୋଳନ ସପକ୍ଷରେ ବରାବର ମସୁଧା ଚଳାଇ ଥିଲେ, ପ୍ରଜା ଆନ୍ଦୋଳନରେ ପ୍ରତ୍ୟକ୍ଷଜଡ଼ିତ ନଥିବା ଅଥଚ ସେଥିପାଇଁ ପୂର୍ଣ୍ଣ ସମର୍ଥନ ଓ ସାହାଯ୍ୟ କରୁଥିବା ନେତୃବର୍ଗଙ୍କ ଜରିଆରେ । ସ୍ୱାଧୀନତା ଆନ୍ଦୋଳନର ଏହି ମନସ୍ତାତ୍ତ୍ୱିକ ପର୍ଯ୍ୟାୟରେ ଶ୍ରୀ ମିଶ୍ରଙ୍କର ଭୂମିକା ଥିଲା ଉଭୟ ବିପଦ ଶଙ୍କୁଳ ତଥା ମର୍ଯ୍ୟାଦାବନ୍ତ । ବେଜେଲ୍‌ଗେଟ୍ ନିଧନ ପରେ ରଣପୁର-ବାସୀଙ୍କ ଉପରେ ଅକଥନୀୟ ଅତ୍ୟାଚାରର ଆଶଙ୍କାରେ ଏହି କୃତବିଦ୍ୟ ଦେଶାନୁରାଗୀ ମହତାବ ବାବୁଙ୍କ ଆଗରେ ଶୋକାକୁଳ ନୟନରେ ପ୍ରଜା-ମାନଙ୍କର କଷ୍ଟ ଲାଘବ କରିବାର ପନ୍ଥା ଖୋଜିଛନ୍ତି ଏବଂ ରାଜବନ୍ଦୀମାନଙ୍କୁ ତୁରନ୍ତ ଖଲାସ କରିବା ସଙ୍ଗେ ସଙ୍ଗେ ବ୍ରିଟିଶ ସରକାର ତଥା ଉଚ୍ଚ ଶାସନ କର୍ତ୍ତାଙ୍କୁ ସମୁଚିତ ପରାମର୍ଶ ଦେଇଛନ୍ତି । ଭାରତ ସରକାରଙ୍କ ମିଲିଟାରୀ ଇଣ୍ଟେଲିଜେନ୍‌ସ୍‌ଙ୍କ ଅନୁସନ୍ଧାନ ବେଳେ ଓ ମହାତ୍ମା ଗାନ୍ଧିଙ୍କ ବାର୍ତ୍ତାହର ରୂପେ ଆସିଥିବା ଭାରତ ପାର୍ଲ୍ୟାମେଣ୍ଟର ମହିଳା ସଦସ୍ୟାଙ୍କ ଜବାବ ସୁଆଲରେ ଶ୍ରୀ ମିଶ୍ର ଏକ ନିଚ୍ଛକ ଦେଶପ୍ରେମୀର ନିର୍ଭୀକ ଓ ସଚ୍ଚୋଟ ବୟାନ ଦେଇଥିଲେ, ସେ କଥାର ମହତାବ ବାବୁ ଭୂୟସୀ ପ୍ରଶଂସା କରିଛନ୍ତି ।

ଶ୍ରୀଯୁକ୍ତ ମିଶ୍ର ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ନୟାଗଡ଼ରେ ସରକାରୀ ଓକିଲ ହିସାବରେ ଅଧିଷ୍ଠିତ ହେଲେ । ୧୯୪୭ ବେଳକୁ ରାଜ୍ୟଗୁଡ଼ିକରେ ଶାସନ ସଂସ୍କାରର ହାଓ୍ୱା ବହିଲା ବେଳେ ଅନ୍ୟାନ୍ୟ ରାଜାଙ୍କ ପରି ନୟାଗଡ଼

ରଜା ଏକ ମନ୍ତ୍ରିମଣ୍ଡଳ ଗଢ଼ି କେତେକ କ୍ଷମତା ହସ୍ତାନ୍ତର କରିବାକୁ ବାଧ ହେଲେ । ଏହି ମନ୍ତ୍ରୀମଣ୍ଡଳରେ ଥିବା କେତେକ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କ ଅନୁରୋଧ କ୍ରମେ ମନ୍ତ୍ରୀମଣ୍ଡଳର ମୁଖ୍ୟ ପରାମର୍ଶଦାତା ଭାବେ ଆଇନଜୀବି ଶ୍ରୀ ମିଶ୍ରଙ୍କୁ ନିଯୁକ୍ତ କରାଗଲା । ଓଡ଼ିଶାର ମନ୍ତ୍ରୀମାନେ ତଥା ଦେଶର ତୁଙ୍ଗ ରାଜନୈତିକ ନେତାମାନେ ନୟାଗଡ଼ର ମନ୍ତ୍ରୀମଣ୍ଡଳ ପ୍ରଶାସନ ସମ୍ପର୍କରେ ଆଲୋଚନା କଲାବେଳେ ଶ୍ରୀ ମିଶ୍ରଙ୍କ ମତାମତକୁ ପ୍ରାଧାନ୍ୟ ଓ ସମ୍ମାନ ଦେଉ ଥିଲେ । ୧୯୪୮ ମସିହା ଜାନୁୟାରୀ ୧ ତାରିଖରେ ଗଡ଼ଜାତ ମିଶ୍ରଣ ପୃଷ୍ଠ ଭୂମିରେ କେବଳ ଶ୍ରୀ ମିଶ୍ରଙ୍କ ଦୂରଦର୍ଶୀ ପରାମର୍ଶ ଯୋଗେ ନୟାଗଡ଼ ରାଜା ଓଡ଼ିଶା ସରକାରଙ୍କ ପ୍ରତିନିଧି ଆଡମିନିଷ୍ଟ୍ରେଟର୍‌ଙ୍କୁ କ୍ଷମତା ହସ୍ତାନ୍ତର କରିବା ପୂର୍ବରୁ ରାଜାନୁଗତ କୁଟୀଳ ମତି ଉଚ୍ଚ କର୍ମଚାରୀ ଓ ରାଜ ପରିବାର ଲୋକଙ୍କୁ ସ୍ଥାୟୀ ଅସ୍ଥାୟୀ ସମ୍ପତ୍ତି ଓ ନିଯୁକ୍ତି ଇତ୍ୟାଦି ଦାନ କରିବାର ଷଡ଼ଯନ୍ତ୍ର ପଣ୍ଡ ହେଲା, ଯାହାକି ଅନ୍ୟାନ୍ୟ ରାଜ୍ୟରେ ଘଟିଥିଲା ।

କେବଳ ଆଇନ ବ୍ୟବସାୟରେ ପରାକାଷ୍ଠା ନୁହେଁ ରଣପୁର ଓ ନୟାଗଡ଼ ଉଭୟ ରାଜ୍ୟର ପ୍ରଜାମଣ୍ଡଳ ଆନ୍ଦୋଳନରତ କର୍ମୀଙ୍କୁ ଆଇନଗତ ପରାମର୍ଶ ଓ ଅକୁଣ୍ଠ ସହାନୁଭୂତି ଦେବାରେ ଓ ରାଜନୈତିକ ତଥା ସାମାଜିକ ପରିସ୍ଥିତିରେ ବଳିଷ୍ଠ ଦିଗ୍‌ଦର୍ଶନ ଦେଇ ସେ ସବୁ ସ୍ତରର ଦେଶପ୍ରେମୀଙ୍କ ଶୁଭାନୁଧାୟୀ ବନ୍ଧୁ ଭାବରେ ପରିଚିତ ହୋଇଥିଲେ । ଐତିହାସିକ ଷଢ଼େଇକଳା ଖରସୁଆଁ ସୀମା ବିବାଦ ନେଇ ନୟାଗଡ଼ରେ ଯେଉଁ ଆନ୍ଦୋଳନ ହୋଇଥିଲା ତାହାର ପୁରୋ-ଭାଗରେ ଥିଲେ ଶ୍ରୀଯୁକ୍ତ ମିଶ୍ର । ଅନେକ ସମାଜ ମଙ୍ଗଳ କାର୍ଯ୍ୟ ତଥା ଭାରତ ରୁଷ୍ ସୁହୃଦ ସମିତିଙ୍କ କାର୍ଯ୍ୟକଳାପରେ ଶ୍ରୀ ମିଶ୍ରଙ୍କ ଅବଦାନ ଉଲ୍ଲେଖନୀୟ ଥିଲା ଓ ସେ ସୋଭିଏତ୍ କନ୍‌ସଲ ଜେନେରାଲଙ୍କ ନୟାଗଡ଼ ସମ୍ବର୍ଦ୍ଧନା ଆୟୋଜନରେ ଶ୍ରୀଯୁକ୍ତ ଗଙ୍ଗାଧର ପାଇକରାୟ, ଶ୍ରୀ ରଘୁନାଥ ଦାସ, ଶ୍ରୀ କୃପାସିନ୍ଧୁ ପଟ୍ଟନାୟକ ଆଡ୍‌ଭୋକେଟଙ୍କ ସହିତ ବିଶିଷ୍ଟ ଭୂମିକା ନେଇଥିଲେ ।

ବାସ୍ତବ ଇତିହାସକୁ କଦାକାର କରି ସମ୍ପୂର୍ଣ୍ଣ ମିଥ୍ୟାଶ୍ରୟୀ ଚରିତ୍ର ସଂହାର ଏବଂ କିଛି ନକଲି ଦେଶ ସେବକଙ୍କ କଳ୍ପିତ ଗୌରବକୁ ଜାହିର କରିବା ମନୋବୃତ୍ତିକୁ ରୂପାୟନ କରିବାର ଅପଚେଷ୍ଟା ପରବର୍ତ୍ତୀ ସମୟର ସ୍ୱାର୍ଥପର ବ୍ୟକ୍ତିଗ୍ରହରେ ସ୍ଥାନ ପାଇ ଲାଗିଛି । ୧୯୯୦ ଅଗଷ୍ଟ ମାସରେ କଟକର ଦୂରଦର୍ଶନ କେନ୍ଦ୍ର ଏକ ଟେଲିଫିଲ୍ମ 'ରଘୁ ଦିବାକର' ପ୍ରଯୋଜନା କରିଥିଲେ ଏବଂ ତାହା ଅଗଷ୍ଟ ୧୧ ତାରିଖରେ ପ୍ରଦର୍ଶିତ ହେବ ବୋଲି ବିଜ୍ଞପ୍ତି ହେଲା । ଏଥିରେ

ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କୁ ବେଜେଲଗେଟ୍ ହତ୍ୟା ମକଦ୍ଦମାରେ ଜଣେ ଦେଶଦ୍ରୋହୀ ଓ ବ୍ୟଙ୍ଗ ଚରିତ୍ରର ରାଜସାକ୍ଷୀ ରୂପେ ଚିତ୍ରିତ କରାଯାଇଛି ବୋଲି ଜଣାଯିବା ପରେ କେତେକ ସ୍ଥାନୀୟ ବିଧାୟକ ଏବଂ ବୁଦ୍ଧିଜୀବି ଦୂରଦର୍ଶନ କର୍ତ୍ତୃପକ୍ଷଙ୍କୁ ଏହାର ବିରୋଧ କରି ଲିଖିତ ଅଭିଯୋଗ କଲେ । ରଣପୁର ପ୍ରଜା ଆନ୍ଦୋଳନରେ ଶ୍ରୀ ମିଶ୍ରଙ୍କର ଭୂମିକା ବାସ୍ତବରେ କଣ ଥିଲା ଓ କେଉଁ ଜଟିଳ ପରିସ୍ଥିତିରେ ସେ ରଣପୁରବାସୀଙ୍କ ଦମନ ନିରାକରଣ ପାଇଁ ଉଦ୍ୟମ କରିଥିଲେ ସେକଥା ନାଟ୍ୟକାର ଓ ପ୍ରଯୋଜକମାନେ ଅନୁଧ୍ୟାନ କରିବା କର୍ତ୍ତବ୍ୟ ମନେକଲେ ନାହିଁ । ନାଟକରେ ସରକାରୀ ଓକିଲ ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟ ଓ ଆସିଷ୍ଟାଣ୍ଟ ଦେଓ୍ୱାନ ଶ୍ରୀ ମିଶ୍ରଙ୍କୁ ଖଳନାୟକ ଭାବେ ସଜେଇ ଦିଆଗଲା । ସମ୍ଭବତଃ କେତେକ ଅଜ୍ଞ ଓ ଇତିହାସ ବିମୁଖ କୂଚକ୍ରୀଙ୍କ ପ୍ରଭାବ ସେମାନଙ୍କର ଅବଲମ୍ବନ ଥିଲା । ଅଭିଯୁକ୍ତ ବନ୍ଦୀମାନଙ୍କ ପକ୍ଷରୁ ଲଢ଼ୁଥିବା ଆଡ୍‌ଭୋକେଟ ଶ୍ରୀ ଦୀନବନ୍ଧୁ ସାହୁ ଚଣ୍ଡେଶ୍ୱର ମିଶ୍ରଙ୍କର ବ୍ୟକ୍ତିଗତ ବନ୍ଧୁ ଥିଲେ । ଶ୍ରୀ ମିଶ୍ର ବେଜେଲ୍‌ଗେଟ୍ ହତ୍ୟା ମକଦ୍ଦମାରେ ରାଜସାକ୍ଷୀ ନଥିଲେ ଏବଂ ସାକ୍ଷ୍ୟ ଦେଇ ନଥିଲେ । ତଥାପି ତାଙ୍କୁ ସିନେମା ଢାଞ୍ଚାରେ ଖଳନାୟକ ରାଜସାକ୍ଷୀ ଚରିତ୍ର ଆରୋପ କରିବାର ଅପଚେଷ୍ଟା କରାଗଲା । କେତେକ ବିଶିଷ୍ଟ ବ୍ୟକ୍ତି ଓ ଐତିହାସିକଙ୍କ ବୌଦ୍ଧିକ ପ୍ରତିବାଦ ଯୋଗୁଁ ଦୂରଦର୍ଶନ ନାଟକରେ ଉଚ୍ଚାରିତ ଶ୍ରୀ ମିଶ୍ରଙ୍କ ନାମକୁ ଉହ୍ୟ ଓ ଅପ୍ରକାଶ ରଖିଲେ ।

ଏହି ନାଟକ ପ୍ରଯୋଜନା ଆଗରୁ ଜଣେ ଲେଖକ ବନ୍ଧୁ ଶ୍ରୀରାମଚନ୍ଦ୍ର ରାମଙ୍କ ଲିଖିତ 'ସଂଗ୍ରାମୀ' ପୁସ୍ତକର କେତେକ ବିବଦମାନ ଅଂଶ ମୋ ଦୃଷ୍ଟିକୁ ଆଣିଥିଲେ । ସେଥିରେ ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କ ସମ୍ପର୍କରେ କେତେକ ଅଶାଳୀନ ଚରିତ୍ର ସଂହାର ଉଦ୍ଦିଷ୍ଟ ମନ୍ତବ୍ୟ ଦିଆଯାଇଛି ଯାହା ସମ୍ପୂର୍ଣ୍ଣ ଅବାସ୍ତବ ଓ ଲେଖକର ଉଗ୍ର ଅହମିକା ପ୍ରସୂତ । ଏହି ପୁସ୍ତକଟି ଶ୍ରୀ ମିଶ୍ରଙ୍କ ଦେହାବସାନର ବାରବର୍ଷ ପରେ ପ୍ରକାଶ ପାଇଲା । ଶ୍ରୀ ମିଶ୍ରଙ୍କ ଜୀବଦ୍ଦଶାରେ ଛପା ହେଇଥିଲେ ତାଙ୍କଠୁଁ ସତ୍ୟାସତ୍ୟ ପରୀକ୍ଷିତ ହୋଇଥାନ୍ତା । ଜଣେ ସମ୍ମାନିତ ଓ ପ୍ରତିଷ୍ଠିତ ଆଇନ୍‌ଜୀବୀ ଭାବେ ଶ୍ରୀ ମିଶ୍ର ଆଡ୍‌ଭୋକେଟ୍ ରାମ ବାବୁଙ୍କ ବିପକ୍ଷରେ କେତେକ ମୋକଦ୍ଦମାରେ ଅବତୀର୍ଣ୍ଣ ହେଇଥିବେ । କୌତୁକର କଥା ସେସବୁର ଫଳଶ୍ରୁତି ବ୍ୟକ୍ତିଗତ ବିଦ୍ୱେଷ ଆଡ଼ୁଆଳରେ 'ସଂଗ୍ରାମୀ' ବହିରେ କୁଟୀଳ ଭଙ୍ଗୀ ନେଇଛି ।

ଆମ ସମୟରେ ମହାତ୍ମା ଗାନ୍ଧିଙ୍କୁ ଜାତିର ପିତା ଚିହ୍ନଟରୁ ନିର୍ବାସିତ କରିବା ପାଇଁ କେତେକ ସ୍ୱାର୍ଥାନ୍ୱେଷୀ ନେତାଙ୍କ ତରଫରୁ ବ୍ୟବସ୍ଥା ଆରମ୍ଭ

ହେଲଣି ଏବଂ ଗାନ୍ଧିଜୀଙ୍କୁ ସମାଜଦ୍ରୋହୀ ହରିଜନ ଦ୍ରୋହୀ ଆଖ୍ୟା ଦିଆଗଲଣି । ପୂଣ୍ୟଶ୍ଳୋକ ଫକୀରମୋହନଙ୍କୁ କିଛି ନକଲି ନେତା ଓ ଶଠ ଦେଶପ୍ରେମୀ ପ୍ରଜା ବିରୋଧୀ ଓ ରାଜବଚସ୍କର ଆଖ୍ୟା ଦେଇ ସାରିଲେଣି । ଏଣିକି ନୂତନ ପିଢ଼ିର ଯୁବଶକ୍ତି ଦେଶ ଓ ସଂସ୍କୃତିର ପ୍ରାଣ ପିଣ୍ଡକୁ କେଉଁ ଭବରେ ସୁରକ୍ଷିତ ରଖିବେ ଏଥିପାଇଁ ଏକ ନୂଆ ସଂଗ୍ରାମର ସମୟ ଆସନ୍ନ । ଏଇ ପରିପ୍ରେକ୍ଷୀରେ ଶ୍ରୀ ମିଶ୍ରଙ୍କ ଚରିତ୍ରବତ୍ତା ଓ ନିର୍ଭିକ ମନୀଷା ଆମର ଧ୍ୟେୟ ହେଉ ।

ରଣପୁରର ଏକ ପୂର୍ଣ୍ଣାଙ୍ଗ ଇତିହାସ ଲେଖିବା ପ୍ରକଳ୍ପ ସମ୍ବନ୍ଧରେ ମୁଁ କେତେଜଣ ବିଶିଷ୍ଟ ବର୍ଷିୟାନ ବ୍ୟକ୍ତିଙ୍କ ସାଙ୍ଗେ ଆଲୋଚନା ପରାମର୍ଶ କରିବାର ସୁଯୋଗ ପାଇଛି । ସଚ୍ଚୋଟ ସଂଗ୍ରାମୀ ଶ୍ରୀ ଗଙ୍ଗାଧର ପାଇକରାୟ ମତେ କହିଛନ୍ତି 'ଚଣ୍ଡେଶ୍ୱର ବାବୁ ଜଣେ ବିଦ୍ୱାନ ଭଦ୍ର ଲୋକ ଖାଲି ନ ଥିଲେ, ଅତି ସରଳ ଓ ନିଷ୍କପଟ ମଧ୍ୟ । ସେଇ ସମୟର କ୍ୱଚିତ୍ ଉଚ୍ଚ ଶିକ୍ଷିତ ବ୍ୟକ୍ତି ତାଙ୍କ ପରି ଉଦାରମନା ଥିଲେ । ରଣପୁରର ପ୍ରଜା କିପରି ସନ୍ତୋଳନରୁ ମୁକ୍ତି ପାଇବେ ତାହା ତାଙ୍କର ଜପାମାଳି ହୋଇ ରହିଥିଲା ।' ସ୍ୱର୍ଗତ ଅଧ୍ୟାପକ ଗିରିଜା ଶଙ୍କର ରାୟଙ୍କୁ ପଚାରିଥିଲି । କହିଥିଲେ 'ମୋ ପିତା ଚଣ୍ଡେଶ୍ୱରଙ୍କର ସଂସ୍କୃତ ଓ ଇଂରାଜୀରେ ଖୁବ୍ ଦକ୍ଷତା ଥିଲା । ଦରିଦ୍ର ବ୍ରାହ୍ମଣ ହୋଇଥିଲେ ବି ଉଦାରମନା ଓ ନିର୍ଲୋଭ । କାହା ପ୍ରତି ଆକ୍ରୋଶ ନାହିଁ, ଶ୍ଳେଷ ନାହିଁ । ଐତିହାସିକ ଶ୍ରୀ ଜଗନ୍ନାଥ ପଟ୍ଟନାୟକଙ୍କୁ ପଚାରିଥିଲି । କହିଲେ 'ଚଣ୍ଡେଶ୍ୱର ମିଶ୍ରଙ୍କ ବିଷୟରେ ପ୍ରଜା ନିର୍ଯ୍ୟାତନାର କୌଣସି ଅଭିଯୋଗ ନାହିଁ । ସେ ବେଙ୍କେଲ୍‌ଗେଟ୍ ନିଧନର ଅଳ୍ପଦିନ ପୂର୍ବରୁ ଦେଓ୍ୱାନ୍ କାର୍ଯ୍ୟଭାର ଗ୍ରହଣ କରିଥିଲେ । ରଣପୁରର ପ୍ରଜାମେଳି ପାଇଁ ତାଙ୍କ ପୂର୍ବର ମୁଖ୍ୟ ଶାସନ କର୍ତ୍ତାମାନେ ଦାୟୀ ।'

ଶ୍ରୀ ମିଶ୍ରଙ୍କ ଉଦ୍ୟମରେ ରଣପୁରରେ ହାଇସ୍କୁଲ ଓ ନୟାଗଡ଼ରେ କଲେଜ ପ୍ରତିଷ୍ଠା ହୋଇଥିଲା । ବୋଧହୁଏ ବ୍ରିଟିଶ୍ ଶାସନ ସମୟରେ ସେ ଏକମାତ୍ର ପଦସ୍ଥ ରାଜ କର୍ମଚାରୀ ଯେ କି ଖଦୀ ପିନ୍ଧୁଥିଲେ ଏବଂ ସ୍ୱାଧୀନତା ସଂଗ୍ରାମ ଓ ଗାନ୍ଧୀବାଦକୁ ମୁକ୍ତ ସମର୍ଥନ କରୁଥିଲେ । ନୟାଗଡ଼ ସବ୍‌ଡିଭିଜନ୍ ବୋଲଗଡ଼ ବାଙ୍କି ବୁଗୁଡ଼ା ଥାନାମାନ ଏବଂ ନରସିଂହପୁର ବଡ଼ାମ୍ବାକୁ ନେଇ ଏକ ମହାନଦୀ ଜିଲ୍ଲା ଗଠନ କରିବା ପାଇଁ ସେ ସରକାରଙ୍କ ସଙ୍ଗେ ବହୁ ଦିନରୁ ବିଚାର ଆଲୋଚନା ଚଳାଇଥିଲେ ଯାହା ବର୍ତ୍ତମାନ କିଛିଟା ଖର୍ବିତ ଆକାରରେ ନୂତନ ନୟାଗଡ଼ ଜିଲ୍ଲା ଗଠନରେ ସମ୍ଭବ ହେଲା ।

ଓଡ଼ିଶାର ପ୍ରମୁଖ ଜନ ନେତା ସର୍ବଶ୍ରୀ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ଡକ୍ଟର ହରେକୃଷ୍ଣ ମହତାବ, ସର୍ବଶ୍ରୀ ଗୋପବନ୍ଧୁ ଚୌଧୁରୀ,

ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାଶ ଇତ୍ୟାଦିଙ୍କ ସହ ତାଙ୍କର ମାର୍ମିକ ସମ୍ପର୍କ ଥିଲା । ଓଡ଼ିଶାର ବୌଦ୍ଧିକ ତଥା ସାମାଜିକ ପୃଷ୍ଠଭୂମିରେ ସୁପ୍ରତିଷ୍ଠିତ ଡକ୍ଟର ରାଧାନାଥ ରଥ, ଶ୍ରୀଯୁକ୍ତ ଲିଙ୍ଗରାଜ ମିଶ୍ର, ଡକ୍ଟର ଶରତ ଚନ୍ଦ୍ର ମିଶ୍ର, ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଡଃ ମାୟାଧର ମାନସିଂହ, ଶ୍ରୀ ବିମଳ କୃଷ୍ଣ ପାଲ୍ ଆଡ଼ଭୋକେଟ, ସଂଗ୍ରାମ କେଶରୀ ରାୟ, ଜଷ୍ଟିସ୍ ହରିହର ମହାପାତ୍ର, ଜଷ୍ଟିସ୍ ରତିକୃଷ୍ଣ ମିଶ୍ର, ଜଷ୍ଟିସ୍ ଜୟକୃଷ୍ଣ ମିଶ୍ର, ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ର (ପୂର୍ବତନ ସୁପ୍ରିମ୍ କୋର୍ଟ ଚିଫ୍ ଜଷ୍ଟିସ୍), ଆଡ୍‌ଭୋକେଟ୍ ଶ୍ରୀ ଦୀନବନ୍ଧୁ ସାହୁ, ଶ୍ରୀ ଗଙ୍ଗାଧର ମହାପାତ୍ର, ଶ୍ରୀ ସତ୍ୟପ୍ରିୟ ମହାନ୍ତି, ଶ୍ରୀ ଚିନ୍ତାମଣି ମିଶ୍ର ଏପରି ଅନେକ ଓଡ଼ିଶାର ବରପୁତ୍ରଙ୍କ ସହ ତାଙ୍କର ଘନିଷ୍ଠ ବ୍ୟକ୍ତିଗତ ସାନ୍ନିଧ୍ୟ ଥିଲା । ଯେଉଁ ସାମାଜିକ ସମ୍ପର୍କ ଅନୁବଦ୍ଧ ମାନସ ଭୂମିରେ ଶ୍ରୀ ଚଣ୍ଡେଶ୍ୱର ମିଶ୍ର ଅବତୀର୍ଣ୍ଣ ହୋଇଥିଲେ, ତାଙ୍କର କର୍ମମୟ ଜୀବନର ସଂଘର୍ଷ ଏବଂ ଜୀବନ ଯୋଗ ଅନୁଧ୍ୟାନ କଲେ ବିସ୍ମିତ ହେବାକୁ ପଡ଼େ ଯେ ସ୍ୱକୀୟ ନିଷ୍ଠାରେ କିପରି ଏହି କୃତବିଦ୍ୟ ବ୍ୟକ୍ତି ନିଜର ଓ ନିଜ ଦେଶର ଆତ୍ମାଭିମାନକୁ ଜୀବନ କାଳର ଶେଷ ପର୍ଯ୍ୟନ୍ତ ଗରୀୟାନ୍ ଓ ମର୍ଯ୍ୟାଦାବନ୍ତ ଆସନ ଦେଇଥିଲେ ।

ପୁସ୍ତିକାଟିରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ସ୍ମୃତିଚାରଣ ସ୍ଥାନ ପାଇଛି । ଏଥି ସହିତ ଶ୍ରୀ ମିଶ୍ରଙ୍କ ସାହିତ୍ୟକୃତିର କେତେକ ନିଦର୍ଶନ ଯୋଗ କରାଯାଇଛି । ନିକଟରେ ଶ୍ରୀ ମିଶ୍ରଙ୍କ ସମସ୍ତ ପ୍ରକାଶିତ ଲେଖାକୁ ପୁସ୍ତକ ଆକାରରେ ମୁଦ୍ରିତ କରିବାର ଉଦ୍ୟମ ହେଉଛି ।

ଏହି ସ୍ମରଣିକାର ପ୍ରକାଶନ ଓ ଉନ୍ମୋଚନରେ ସମସ୍ତ ଅକୁଣ୍ଠ ସହଯୋଗୀଙ୍କୁ ସାଧୁବାଦ ଜଣାଉଛୁ ।

ବଶମ୍ବଦ

ଉମାଶଙ୍କର ମିଶ୍ର



# ସମୀକ୍ଷା

## ( ସମ୍ପାଦକୀୟ ସ୍ତମ୍ଭ )

ଗଭୀର ଦୁଃଖର କଥା ଯେ, ନୟାଗଡ଼ର ଜଣେ ବିଶିଷ୍ଟ ଆଇନଜୀବୀ ଏବଂ ଲେଖକ ଓ ପ୍ରକାଶକ ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କର ୭୦ ବର୍ଷ ବୟସରେ ଗତ ୨ ତାରିଖ ସକାଳ ୯ଟା ବେଳେ ତାଙ୍କ ନୟାଗଡ଼ ବାସଭବନରେ ପରଲୋକ ହୋଇଯାଇଛି । ଗତ କେତେ ବର୍ଷ ଧରି ସେ ଗୁରୁତର ରକ୍ତଚାପରେ ପୀଡ଼ିତ ଥିଲେ । ଗତ ୩ ଦିନ ଧରି ବିଶେଷ ଭାବରେ ତାଙ୍କର ଅବସ୍ଥା ଖରାପ ହୋଇ ହଠାତ୍ ହୃତ୍‌ପିଣ୍ଡକ୍ରିୟା ବନ୍ଦ ହୋଇଗଲା । ତାଙ୍କ ବିୟୋଗରେ ସ୍ଥାନୀୟ ଲୋକେ ଘୋର ଦୁଃଖିତ । ତାଙ୍କର ଅନ୍ତିମ ଇଚ୍ଛା ଅନୁସାରେ ତାଙ୍କ ଜନ୍ମସ୍ଥଳୀ ରଣପୁରର ରାମଚନ୍ଦ୍ରପୁର ଶାସନକୁ ମଟର ଯୋଗେ ତାଙ୍କର ମୃତଦେହ ନିଆଯାଇ ସେଠାରେ ଶବସତ୍କାର କରାଗଲା । ସେ ବାଙ୍କୀ ହାଇସ୍କୁଲରୁ ମାଟ୍ରିକ, ରେଭେନ୍‌ସା କଲେଜରୁ ବି. ଏ. ଓ ପରେ ବି. ଏଲ. ଡିଗ୍ରୀ ପାଇଥିଲେ । ସେ ନୟାଗଡ଼ ଗଡ଼ଜାତର ଆସିଷ୍ଟାଣ୍ଟ ଦେବୋତ୍ତର ମାନେଜର ଓ ବାଙ୍କୀ ହାଇସ୍କୁଲରେ ଶିକ୍ଷକ କାର୍ଯ୍ୟ କରି ପରେ ରଣପୁର ଷ୍ଟେଟ୍‌ରେ ସହକାରୀ ଦେଓ୍ୱାନ ହୋଇଥିଲେ । ପ୍ରଜା ଆନ୍ଦୋଳନ ବେଳେ ବେଜଲଗେଟ ହତ୍ୟାକାଣ୍ଡ ପରେ ସେ ଚାକିରିରୁ ଇସ୍ତଫା ଦେଇ ପ୍ରଥମେ ରଣପୁର ଓ ପରେ ନୟାଗଡ଼ରେ ଓକିଲାତି କଲେ । ସେ ଜଣେ ଉଚ୍ଚକୋଟୀର ଲେଖକ ଥିଲେ । ତାଙ୍କର ବହୁ ପ୍ରବନ୍ଧ ବିଭିନ୍ନ ସାହିତ୍ୟ ପତ୍ରରେ ପ୍ରକାଶ ପାଇଛି । ସେ ସ୍ୱାଧୀନଚେତା ଓ ସ୍ପଷ୍ଟବାଦୀ ଥିଲେ । ପ୍ରଜାମଣ୍ଡଳ ଆନ୍ଦୋଳନ ପ୍ରତି ତାଙ୍କର ଗଭୀର ସହାନୁଭୂତି ଥିଲା । ତାଙ୍କର ବିଧବା ପତ୍ନୀ, ଦୁଇ ଝିଅ ଓ ପାଞ୍ଚ ପୁଅ ଓ ଅନ୍ୟାନ୍ୟ ଆତ୍ମୀୟସ୍ୱଜନଙ୍କ ପ୍ରତି ଆମ୍ଭେମାନେ ଗଭୀର ସମବେଦନା ଜଣାଉଛୁ । ତାଙ୍କର ପୁତ୍ରମାନଙ୍କ ମଧ୍ୟରୁ ପ୍ରଥମ ପୁତ୍ର ଶ୍ରୀ ଉମାଶଙ୍କର ମିଶ୍ର ବାଲେଶ୍ୱରରେ ଆର. ଟି. ଓ., ଦ୍ୱିତୀୟ ପୁତ୍ର ଡାକ୍ତର ରମାବଲ୍ଲଭ ମିଶ୍ର, ତୃତୀୟ ପୁତ୍ର ଶ୍ରୀ ଦୁର୍ଗାମାଧବ ମିଶ୍ର ଓ ୪ର୍ଥ ପୁତ୍ର ଡାକ୍ତର ଗୌରୀପ୍ରସନ୍ନ ମିଶ୍ର ପ୍ରମୁଖ ସମସ୍ତେ ତାଙ୍କର ଶେଷାବସ୍ଥାରେ ଉପସ୍ଥିତ ଥିଲେ । ଆମ୍ଭେମାନେ ସ୍ୱର୍ଗୀୟ ଚଣ୍ଡେଶ୍ୱର ବାବୁଙ୍କ ଆତ୍ମାର ସଦ୍‌ଗତି କାମନା କରୁଛୁ ।

( ତା ୭ । ୬ । ୭୪ ରିଖ )



ପ୍ରଜାତନ୍ତ୍ର

# ଶୋକ ସମ୍ବାଦ

## ବରିଷ୍ଠ ଆଡ଼ଭୋକେଟ ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କ ପରଲୋକ

ନୟାଗଡ଼, ୩।୬—ଓଡ଼ିଶାର ଅନ୍ୟତମ ଜଣାଶୁଣା ପ୍ରଶାସକ, ଲେଖକ ଓ ଆଇନଜୀବୀ ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କର ଗତକାଲି ପ୍ରାୟ ୭୦ ବର୍ଷ ବୟସରେ ତାଙ୍କର ନୟାଗଡ଼ସ୍ଥିତ ବାସଭବନରେ ପରଲୋକ ହୋଇ ଯାଇଅଛି । ସେ ଗତ କେତେବର୍ଷ ଧରି ରକ୍ତଚାପ ରୋଗରେ ଆକ୍ରାନ୍ତ ହୋଇଥିଲେ । ତାଙ୍କର ଶେଷ ଇଚ୍ଛା ଅନୁଯାୟୀ ତାଙ୍କ ମୃତ୍ୟୁ ଶରୀରକୁ ରଣପୁର ଅନ୍ତର୍ଗତ ତାଙ୍କ ନିଜ ଜନ୍ମସ୍ଥାନ ରାମଚନ୍ଦ୍ରପୁର ଶାସନ ଗ୍ରାମକୁ ନିଆଯାଇ ସେଠାରେ ଶବସତ୍କାର ସମ୍ପନ୍ନ କରାଯାଇଅଛି । ସେ ରଣପୁର ଷ୍ଟେଟରେ ସହକାରୀ ଦେଓ୍ୱାନ ଥିଲେ । ତତ୍‌କାଳୀନ ପଲିଟିକାଲ ଏଜେଣ୍ଟ ବେଜେଲଗେଟ ସାହେବଙ୍କର ରଣପୁରଠାରେ ହତ୍ୟାକାଣ୍ଡ ଘଟିବା ପରେ ସେ ଇସ୍ତଫା ଦେଇ ପ୍ରଥମେ ରଣପୁର ଓ ପରେ ନୟାଗଡ଼ଠାରେ ଓକିଲତି କରିଥିଲେ । ତାଙ୍କର ବହୁ ଉପାଦେୟ ଲେଖା ଓଡ଼ିଶାର ପୁରାତନ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଅଛି । ଶୋକସନ୍ତପ୍ତ ପରିବାରରେ ତାଙ୍କର ବିଧବା ପତ୍ନୀ, ଦୁଇ ଝିଅ ଓ ୫ ଜଣ ପୁଅ ଅଛନ୍ତି । ତାଙ୍କର ବଡ଼ପୁଅ ଶ୍ରୀ ଉମାଶଙ୍କର ମିଶ୍ର ବର୍ତ୍ତମାନ ବାଲେଶ୍ୱରଠାରେ ଆର.ଟି.ଓ. ୨ୟ ଓ ୪ର୍ଥ ପୁତ୍ର ସର୍ବଶ୍ରୀ ରମା ବଲ୍ଲଭ ମିଶ୍ର ଓ ଗୌରୀପ୍ରସନ୍ନ ଡ଼ାକ୍ତର ୩ୟ ପୁତ୍ର ଶ୍ରୀ ଦୁର୍ଗାମାଧବ ନୟାଗଡ଼ରେ ଆଡ଼ଭୋକେଟ ଓ ସାନ ପୁଅ ଦେବୀପ୍ରସନ୍ନ, ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଛନ୍ତି ।

( ପ୍ରଜାତନ୍ତ୍ର, ତା ୫ । ୬ । ୭୪ ରିଖ )



# ଚଣ୍ଡୀବାବୁ

ଜଷ୍ଟିସ୍ ଶ୍ରୀ ହରିହର ମହାପାତ୍ର

ଚଣ୍ଡୀବାବୁଙ୍କ ବାକ୍‌ପଟୁତା ଉଲ୍ଲେଖନୀୟ ଥିଲା । ସେହିପରି ଲୋକେ ଟାଣି ହୋଇ ଆସନ୍ତି ସାଧାରଣ କ୍ଷେତ୍ରକୁ, ବିଶେଷରେ ଗଣ ଆନ୍ଦୋଳନକୁ । ଗଡ଼ଜାତ ପ୍ରଜା ଆନ୍ଦୋଳନ ମୂଳରୁ ସଂଘର୍ଷମୟ । ଭାରତବର୍ଷରେ ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ପର୍ବ ବହୁବର୍ଷ ଧରି ଅନୁନୟ ବିନୟ, ଦରଖାସ୍ତ, ମେମୋରିଆଲରେ କଟି ୧୯୨୧ ବେଳକୁ ଗଣ ଚେତନା ଜାଗ୍ରତ ହେଲା ଅସହଯୋଗ ଓ ଅହିଂସ ମାର୍ଗରେ । ତାହା ଗଡ଼ଜାତ ଅଞ୍ଚଳକୁ ବ୍ୟାପି ନଥିଲା ପ୍ରଥମରୁ । ରଜାମାନଙ୍କ ଜରିଆରେ ବ୍ରିଟିଶ ରଜତ୍ୱ ମଧ୍ୟ ସେଠାରେ ଥିଲା କିନ୍ତୁ ଗାନ୍ଧୀଜୀ ତାକୁ ସ୍ୱତନ୍ତ୍ର ପର୍ଯ୍ୟାୟରେ ରଖିଥିଲେ । ଗଡ଼ଜାତମାନଙ୍କରେ ଅତ୍ୟାଚାର ଓ ଶୋଷଣ ମୋଗଲବନ୍ଦୀଠୁ ଅଧିକ ଥିଲା କିନ୍ତୁ ସେ ସବୁ ଖବର ବାହାରକୁ ବେଶୀ ପ୍ରକାଶ ପାଇପାରୁ ନଥିଲା । ରଜାମାନଙ୍କର ଅଧିକ ଅତ୍ୟାଚାର କାଳେ ଭୋଗିବାକୁ ପଡ଼ିବ ବୋଲି ସେଠାର ଲୋକେ ମୁଣ୍ଡପୋତି ତୁଣ୍ଡମାରି ରହି ଯାଆନ୍ତି ସବୁ ନିର୍ଯାତନା ଭୋଗି । ସେଠାର ଯେଉଁମାନେ ଟିକିଏ ପାଠଶାଠ ହାସଲ କରନ୍ତି, ସେମାନେ କର୍ମ ନିଯୁକ୍ତି ଆଶାରେ ରଜାଙ୍କ ବିରୁଦ୍ଧରେ ପଦାକୁ ବାହାରନ୍ତି ନାହିଁ । ଗଡ଼ଜାତ ଲୋକଙ୍କୁ ମୋଗଲବନ୍ଦୀରେ ଚାକିରି ମିଳିବା ସମ୍ଭବପର ନଥିଲା । ଏହି ଗୋଳମାଳିଆ ପରିସ୍ଥିତିରେ ଯେଉଁ ଅଳ୍ପ କେତେଜଣ ଗଡ଼ଜାତବାସୀ ବାହାର ସହିତ, କଂଗ୍ରେସ ନେତାମାନଙ୍କ ସହିତ ସାକ୍ଷାତ ସମ୍ପର୍କ ରକ୍ଷା କରିବାକୁ ସାହାସ ବାନ୍ଧିଥିଲେ ତାଙ୍କ ଭିତରେ ଚଣ୍ଡୀବାବୁ ଥିଲେ ଅନ୍ୟତମ । ଏପରିକି ଦେୱାନ କାର୍ଯ୍ୟ କରୁଥିଲେ ମଧ୍ୟ । କୌଶଳର ସହିତ ଏ ସମ୍ପର୍କ ରକ୍ଷା କରୁଥିଲେ । ଓକିଲାତି କରିବାରୁ ଅଧିକ ସାହାସ ସେ ଦେଖାଇଲେ । ଚକ ଓଲଟି ଗଲା । ରଜ ପରିବାର ଭିତରେ ଭିତରେ ତାଙ୍କୁ ଭୟ କଲେ, କାଳେ ତାଙ୍କ ଜରିଆରେ କଂଗ୍ରେସ ଆନ୍ଦୋଳନ ମୋଗଲବନ୍ଦୀରୁ ଆସି ପଶିଯିବ । କାର୍ଯ୍ୟତଃ ତାହାହିଁ ହେଲା । ଚଣ୍ଡୀବାବୁ ବହୁ କଷ୍ଟ ସ୍ୱୀକାର କରିଛନ୍ତି ସେତେବେଳେ । ସଚ୍ଚୋଟ ଓ ସ୍ପଷ୍ଟବାଦୀ ଥିବାରୁ ତାଙ୍କ ଉପରେ

ମୋଗଲବନ୍ଦୀର ନେତୃସ୍ଥାନୀୟ ଲୋକେ ଯେପରି ନିର୍ଭର କରି ପାରୁଥିଲେ, ଗଡ଼ଜାତ ଲୋକେ ସେପରି ତାଙ୍କ ନିର୍ଦ୍ଦେଶ ଓ ପରାମର୍ଶ ମାନୁଥିଲେ ।

ଅନ୍ୟ ଏକ ବିଶିଷ୍ଟ ଗୁଣ ତାଙ୍କର ଥିଲା, ରାଜଗୋଷ୍ଠୀର କୋପଦୃଷ୍ଟି ପ୍ରତିହତ କରିବା ପାଇଁ ପଲିଟିକାଲ ଏଜେଣ୍ଟଙ୍କୁ ସାକ୍ଷାତ କଲାବେଳେ ରାଜ-ପରିବାରର ଭଲ କଥା ଦି ଚାରିଟା କହି ଗୋଟେ ଧାରଣା ସୃଷ୍ଟି କରିପାରୁଥିଲେ ଯେ ରାଜ ପରିବାର ଯେତେ ନୁହନ୍ତି, ରାଜକର୍ମଚାରୀମାନେ ଅଯଥା ପ୍ରଜାଙ୍କୁ ହଇରାଣ ହରକତ କରୁଛନ୍ତି । ପଲିଟିକାଲ ଏଜେଣ୍ଟ ଓ ରାଜପରିବାର ସହିତ ବଥାବାର୍ତ୍ତାରୁ ମୁଁ ଏହା ଏକାଧିକବାର ଜାଣୁଥିଲି । ଚଣ୍ଡୀବାବୁ ଅନେକ ସମୟରେ କଟକ ଆସିଲେ କିଛି ସମୟ ଖୋଜି ବୁଲୁଥିଲେ କେଉଁ ସୂତ୍ରରେ ପ୍ରଜା ଆନ୍ଦୋଳନରେ ପ୍ରତ୍ୟକ୍ଷ ଜଡ଼ିତ ନଥିବା ଅଥଚ ସେଥିପାଇଁ ପୂର୍ଣ୍ଣ ସମର୍ଥନ ଓ ସାହାଯ୍ୟ କରୁଥିବା ଲୋକଙ୍କ ମାଧ୍ୟମରେ ପଲିଟିକାଲ ଏଜେଣ୍ଟଙ୍କୁ ଗଡ଼ଜାତର ପ୍ରକୃତ ଅବସ୍ଥା ଜଣାଇ ପାରିବେ । ଏଥିପାଇଁ ପ୍ରଜାଆନ୍ଦୋଳନର ଉଗ୍ରପନ୍ଥୀ ନେତୃସ୍ଥାନୀୟ କେହି କେହି ଭିତରେ ଈର୍ଷା, ବାହାରେ ସମାଲୋଚନା କରୁଥିବାର ଦେଖାଯାଇଥିଲା । ଚଣ୍ଡୀବାବୁ ସେଥିକି ପରୁଆ କରୁ ନଥିଲେ । ସେ ଯୁକ୍ତିବାଦୀ ଥିବାରୁ, ସବୁ କଥାରେ ଖୋଲାଖୋଲି ତର୍କ ଆରମ୍ଭ କରି ଦିଅନ୍ତି । ଧୂଳି ମଳି ଝାଡ଼ି ହେଇଯାଏ ସେଥିରେ ।

ଓକିଲାତିରେ ତାଙ୍କର ପ୍ରବୀଣତା ପ୍ରକାଶ ପାଇଥିଲା । ସୁଯୋଗ ପାଇ-ଥିଲେ ବହୁ ଉପରକୁ ସେ ଉଠି ପାରିଥାଆନ୍ତେ । ସେ କ୍ଷେତ୍ରରେ କେତେ ଥର କିଛି ପରାମର୍ଶ କଲାବେଳେ ତାଙ୍କର ପାରଦର୍ଶିତା ଲକ୍ଷ୍ୟ କରିଅଛି । ଓକିଲାତି ଅପେକ୍ଷା ଅଧିକ ଆଲୋଚନା କରୁଥିଲେ କେଉଁ ବାଟରେ ଗଡ଼ଜାତ ଓ ମୋଗଲ ବନ୍ଦୀ ଲୋକଙ୍କର ଆନ୍ଦୋଳନ ବାହାରେ ଯୋଗାଯୋଗ ହେବ । କେତେଥର ଗଡ଼ଜାତର ରେଭେନ୍‌ସା କଲେଜରେ ପଢ଼ୁଥିବା ପିଲାଙ୍କୁ ସାଙ୍ଗରେ ନେଇ ଆସନ୍ତି ।

୧ । ୧୧ । ୯୦

ହରିହର ମହାପାତ୍ର

(ପୂର୍ବତନ ମୁଖ୍ୟ ବିଚାରପତି ପାଟନା ହାଇକୋର୍ଟ)



# ରଣପୁରର ବଡ଼ ପାଠୁଆ

ଶ୍ରୀ ଦାଶରଥି ପଟ୍ଟନାୟକ

୧୯୩୮-୩୯ର କଥା । ମୁନି ସାହେବ ମୋ ପାଖକୁ ଆଦେଶ ପଠାଇଲେ—ରଣପୁରରେ ସାକ୍ଷାତ କର (ତାରିଖ ମନେ ନାହିଁ) । ରଣପୁରରେ ମୋର ଚିହ୍ନା ନ ଥିବାରୁ ନୟାଗଡ଼ରେ ବହୁ ବଡ଼ ବଡ଼ଙ୍କୁ ପଚାରିଲି । 'ରଣପୁର ଗଲେ କାହାକୁ ଦେଖା କରିବି ?' ଆମ ଏଠାର ବଡ଼ ହାକିମ ତହସିଲଦାର ଉଦୟନାଥ ପଟ୍ଟନାୟକ ଗୋଟିଏ ଠିକଣା ଦେଲେ । ଦେଓ୍ୱାନ ମାନ୍ୟବର ଶ୍ରୀଯୁକ୍ତ ଚଣ୍ଡେଶ୍ୱର ମିଶ୍ରଙ୍କ ନାଁ । ଏଡ଼େ ଲୋକଙ୍କ ପାଖକୁ ଯିବା ଡର ।

ରଣପୁର ଗଲି ଦିନକ ଆଗରୁ । ରଣପୁରରେ ଦେଓ୍ୱାନ୍‌ଙ୍କ କଥା ପଚାରିଲି । ସମସ୍ତେ କହିଲେ ଅରାଗୀ ଲୋକ । ବ୍ୟବହାର ଭଲ । ତାଙ୍କ ବଡ଼ ଭାଇ ଦେଉଳରେ ଅମିନ ଅଛନ୍ତି । ତାଙ୍କୁ ଦେଖିଲେ ସେ ସାକ୍ଷାତ ସମୟ କହିବେ । ଅମୀନଙ୍କ ପାଖକୁ ଗଲି । ମୋର କ'ଣ ଦେଖି ସେ ମୋ ମୁଣ୍ଡରେ ହାତ ମାରିଲେ । ମୋ କଥା ଶୁଣି କଚେରୀକୁ ପଠାଇ ଦେଲେ ।

କଚେରୀ ଘର ଆଗରେ ଗୋଟିଏ କାଠପଟା ଘର ଥାଏ । ତଳେ କାଠ ପଟା ପଡ଼ିଥାଏ । ସେଠାକୁ ଯାଇ ହାକିମଙ୍କୁ ଦଣ୍ଡ ପ୍ରଣାମ ହେଲି । ସେ ହସି ହସି ମୋ କଥା ପଚାରିଲେ । ମୁଁ ମୁନି ସାହେବଙ୍କ ଅର୍ଡ଼ର ଦେଖାଇଲି । ସେ ପଢ଼ି ହସିଲେ । ଅର୍ଡ଼ରରେ ଲେଖାଥିଲା ରଣପୁରରେ ତମକୁ 'ନାକା ମୋହରିର'ରେ ରଖାଯିବ । ମାନ୍ୟବତାରଙ୍କୁ କହିଲେ—ମୁଁ ରେଞ୍ଜରଙ୍କୁ କହିବି । ସେ ସାଥିରେ ନେଇ ମୁନି ସାହେବଙ୍କ ପାଖକୁ ଯିବେ ।

ତାପରେ ସନ୍ଧ୍ୟାକୁ ରେଞ୍ଜର ଚଣ୍ଡୀବାବୁଙ୍କୁ ସାକ୍ଷାତ କଲି । ସେ ମୋତେ ଦେଖୁ ଦେଖୁ କହିଲେ—ତମେ ଦାଶରଥି ପଟ୍ଟନାୟକ ନା ? ମୁଁ ହଁ କଲି ।

ସେ କହିଲେ—ଆମ ଦେଓ୍ୱାନଙ୍କ ପାଖକୁ ଯାଇଥିଲ କି ? ମୁଁ ହଁ କଲି । ରେଞ୍ଜର କହିଲେ-—କାଲି ସକାଳୁ ଏଠାକୁ ଆସିବ । ମୁଁ ସାଥିରେ ନେବି । ମୋ ପାଖକୁ ମଧ୍ୟ ଅର୍ଡ଼ର ଆସିଛି ।

ତା' ପର ଦିନ ମୁନି ସାହେବଙ୍କୁ ସାକ୍ଷାତ ହେଲା । ମୋତେ କରଡ଼ା ପଲରେ ନାକା ମୋହରିରରେ ମୁକରିର୍ କଲେ । ସୁଯୋଗ ଆଗେ ଆଗେ ଯାଏ । ରଣପୁରରୁ କରଡ଼ା ପଲ ଯିବା ବାଟରେ ଅମୀନ ବାବୁଙ୍କ ଗାଁ ଗମଚନ୍ଦ୍ରପୁର ବାଟେ ଗଲି । ଦି' ଘଇଙ୍କୁ ଦେଖିଲି । ଦେଓ୍ୱାନ ସାହେବ ରେଞ୍ଜରଙ୍କ ଠାରୁ ସବୁ ଜାଣିବା କଥା କହିଲେ । ତାପରେ ଦି'ଭଇ କହିଲେ— ଏଇବାଟେ ତ ଯିବା ଆସିବା ବାଟ ଗଡ଼କୁ । ଏଇଠି ହବୁଡ଼ି ଖାଇକରି ଯାଉଥିବ । ଡେରି ହେଲେ ମାଗି ଖାଇବ । ମୁଁ ଘରେ କହି ଦଉଛି ।

କାମରେ ଜଏନ କଲି । ନାକା ମୋହରିର ଅର୍ଥ ୨ୟ ଶ୍ରେଣୀ ଫରେଷ୍ଟର । ରଣପୁର ତ ଆମ ହେଡ୍ ଅଫିସ । ବଗବର ରଣପୁରରେ ଘଟି ରହେ । ଏପରି ଯୋଗ ଯେ ଯେଉଁ ଘରର କବାଟରେ ବେଜେଲଗେଟଙ୍କ ରକ୍ତ ଲଗିଥିଲ ସେ ଘରଟି ଭଣ୍ଡାରି ସାଇ ମଝିରେ । ସେ ଘରେ ରହିଲି ପ୍ରାୟ ପ୍ରତିଦିନ । କରଡ଼ା-ପଲରେ ଘର ନ ଥିବାରୁ ଏ ଘରେ ରହେ ।

ସୁଯୋଗ ସହ ଦୁର୍ଯୋଗ ଆସେ । ବେଜେଲଗେଟଙ୍କ ମକଦ୍ଦମାରେ ସାକ୍ଷୀ ଦେବାକୁ ଦରକାର ଗଜ୍ୟର ବୁଢିଆ / କହିପାରିବା ( ଏ ଯୁଗର ଟାଉଟରିଆଙ୍କ ପରି ) ୧୫।୨୦ ଜଣ ସାକ୍ଷୀ ଦେବା ପୂର୍ବରୁ ଟ୍ରେନିଂ ପାଇଁ ଆସି ମୁଁ ଥିବା ଘରେ ରହନ୍ତି । ଘଡିରେ ଏକାଠି ହେଲେ ମାଇପିଙ୍କ ଗାଧୁଆ ତୁଠ ପରି ଢିଙ୍କିଶାଳରୁ ଢେଙ୍କାନାଳ ଯାଏଁ କଥା ପଡ଼େ ( ସେମାନଙ୍କ ମଧ୍ୟରେ ଗୁପ୍ତ ପୋଲିସ କାମ କରିବା ଲୋକ ଥାଆନ୍ତି ) । ଏମାନଙ୍କ ଗୁପ୍ତ ରିପୋର୍ଟରେ ପୁରୁଣା ସାକ୍ଷୀଙ୍କୁ ତଡ଼ି ନୂଆ ଆସନ୍ତି । (ଏକଥା ପରେ ଜଣାଗଲା) ଯିଏ ସରକାରଙ୍କ ବିରୋଧରେ ଟିକିଏ ମାତ୍ର ପ୍ରତିବାଦ କରେ ଗାଁକୁ ତଡ଼ାଯାଏ । ମୁଁ ବି ତ ମଣିଷ । ମୋ କଥା ମଧ୍ୟ ଗୁପ୍ତ ପୋଲିସ୍ ଟିପିଲା । ରିପୋର୍ଟ ଦେଲା । ଏ ରିପୋର୍ଟ କ୍ରମେ ଜଣା-ପଡ଼ିବାରୁ ମୋର ଆଶ୍ରା ଶ୍ରାନ୍ତ ଚଣ୍ଡିବାବୁ—ତାଙ୍କୁ ଘରଠି ପଚାରିଲି । ସେ ବୁଦ୍ଧି ଦେଲେ । ଛୁଟି ନେଇ ପଳାଅ । ସେତେବେଳକୁ ସାକ୍ଷ୍ୟ କାମ ସରିଲଣି । ଗୟ ବାକି ଥାଏ । ମୁଁ ଛୁଟିରେ ପଳାଇ ଆସିଲି ।

ମୋ କଥା ମହତାବଙ୍କ କାନକୁ ଯିବା ମଧ୍ୟ ଜାଣିଲି । ଚଣ୍ଡୀବାବୁଙ୍କ ଘରକୁ ବହୁବାର ଯାଇଛି । କଚେରିରେ ଦେଖା ହେଲେ କହନ୍ତି 'ନାକାବାବୁ

ଭଲତ ? ଏପରି ଆଗ୍ରହ ବାକ୍ୟରେ ମୁଁ ଫୁଲିଉଠେ । ରଣପୁରରେ ୩୯ ରୁ ୪୬ ଶେଷ ଯାଏଁ ଥିଲି । ଶତାଧିକ ଥର ସରକାରୀ କାମରେ କାଗଜ ଧରି ଚଣ୍ଡୀବାବୁଙ୍କ ପାଖକୁ ଯାଇଛି । ସେ ମତେ ଦେଖିଲେ ମୋ କାମଟି ଆଗ କରନ୍ତି ।

ଚଣ୍ଡୀବାବୁ ରାଜ୍ୟରେ ପ୍ରଚାରିତ ବଡ଼ ପାଠୁଆ । ସେ ସମୟରେ ଏତେ ପାଠ ରାଜ୍ୟରେ (ଆମ ଅଞ୍ଚଳରେ) କେହି ପଢ଼ି ନ ଥିଲେ । ଏ ମଧ୍ୟରେ ଚଣ୍ଡୀବାବୁ ନୟାଗଡ଼ରେ ଓକିଲାତି କଲେ । ପ୍ରଜା ଆନ୍ଦୋଳନର ମୁଖ୍ୟ ନେତା ନଥିଲେ ବି ଗୁପ୍ତ ମନ୍ତ୍ରଣାରେ ସମସ୍ତେ ପଚାରୁଥିଲେ । ରାଜ୍ୟରେ ବେଜେଲ୍ ଗେଟ ମର୍ଡର ପରେ ଶୂନ୍ୟ ପଡ଼ିଗଲା । ମହତାବ ଓ ଚଣ୍ଡୀବାବୁଙ୍କ ଯୋଗୁଁ ଲୋକ ଫେରି ଆସିଲେ ।

ଚଣ୍ଡୀବାବୁ ରଣପୁର ପ୍ରଜା ଆନ୍ଦୋଳନର ମୂଳଦୁଆ ପକେଇଥିଲେ ଗୁପ୍ତଭାବେ । ଲୋକଙ୍କର ଯେପରି ସେ ସ୍ୱୟଂ ଭଗବାନ । ରଣପୁରର କୃତ ସନ୍ତାନ । ଗୋଟିଏ ଗୁଣ—ତାଙ୍କର ଗର୍ବ ବୋଲି ନଥିଲା । ରାଗ ବିରକ୍ତି ମାନବଡ଼ ଏସବୁର ବିଚାରରୁ ଦୂରରେ ଥିଲେ । ପ୍ରଜାବତ୍ସଳ ଓ ରାଜ୍ୟର ସମସ୍ତଙ୍କଠାରେ ପୂଜ୍ୟ । ଏକଥା ମୁଁ ମଫସଲ ବୁଲିବାରେ ବହୁବାର ବହୁ ଗାଁରେ ଶୁଣେ ।

ପ୍ରତିଷ୍ଠାବାନ ଘରର ପୁଅ ସହ ଦେଓ୍ୱାନ, ପରେ ଆଡ଼ଭୋକେଟ । ସବୁ ସ୍ତରରେ ଚଣ୍ଡୀବାବୁ ଲୋକଶକ୍ତି ସଂଗ୍ରହରେ କୃତି ସନ୍ତାନ ଥିଲେ । ମୋ ପାଇଁ ଭଗବାନ ।

ସ୍ଥାପୟିତା ଯଦୁମଣି ସାହିତ୍ୟ ସଂସଦ 'ଇଣ୍ଟିଗ୍ରାଲ ଲାଇବ୍ରେରି'
ଉଦୟପୁର-ନୂଆଗାଁ—ପୁରୀ



# ସ୍ୱର୍ଗତଃ ଚଣ୍ଡେଶ୍ୱର ମିଶ୍ର—
# ଏକ ଅମ୍ଳାନ ପ୍ରତିଭା

ଶ୍ରୀ ଗଙ୍ଗାଧର ମହାପାତ୍ର
(ପୂର୍ବତନ ମନ୍ତ୍ରୀ)

ଚଣ୍ଡୀ ଭାଇନା ବୋଲି ଅନେକ ତାଙ୍କୁ ଶ୍ରଦ୍ଧାର ସହିତ ଡାକନ୍ତି । ସେମାନଙ୍କ ଭିତରୁ ମୁଁ ଜଣେ । ଆମେ ଛାତ୍ରାବସ୍ଥାରେ ସମସାମୟିକ ନଥିଲୁ । ତାଙ୍କର ଆବିର୍ଭାବ ୧୯୦୫ ମସିହା ଓ ତିରୋଧାନ ୧୯୭୪ ମସିହା, କେବଳ ୬୯ ବର୍ଷ ବୟସରେ । ବାଲ୍ୟାବସ୍ଥାରୁ ଚଣ୍ଡୀ ଭାଇନା ବହୁ ପ୍ରତିବନ୍ଧକର ମୁକାବିଲା କରି ଏକ ଆଦର୍ଶ ଜୀବନ ଗଢ଼ିବାରେ ଯେ ସଫଳ ହୋଇଥିଲେ ଏଥିରେ ସନ୍ଦେହ ନାହିଁ । ସେତେବେଳର ଅତ୍ୟାଗ୍ରହୀ ଗଡ଼ଜାତ ଶାସନର ଚରମ ଦମନ-ଲୀଳା, ଅକଥନୀୟ ପ୍ରଜାପୀଡ଼ନ ବିରୁଦ୍ଧରେ ନୟାଗଡ଼, ଦଶପଲ୍ଲା, ରଣପୁର ଓ ଖଣ୍ଡପଡ଼ା ପରି କରଦ ରାଜ୍ୟରେ କ୍ରମଶଃ ପ୍ରଜାମଣ୍ଡଳ ଆନ୍ଦୋଳନ ଯେପରି ଭାବରେ ସଂଗଠିତ ହୋଇ ତୀବ୍ର ଆକାର ଧାରଣ କଲା ତାକୁ ସାହସର ସହିତ ଦିଗ୍‌ଦର୍ଶନ ଦେଇ ଆଗେଇ ନେବାରେ ଯେଉଁ କତିପୟ ବୁଦ୍ଧିଜୀବୀ ସମସ୍ତ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଆନ୍ଦୋଳନକୁ ସଫଳ କରିବାରେ ଯେଉଁମାନଙ୍କ ଅବଦାନ ଥିଲା, ଚଣ୍ଡୀ ଭାଇନା ସେହିମାନଙ୍କ ସହଯୋଗୀ ଭାବରେ ପ୍ରତିଷ୍ଠାଲାଭ କରିଥିଲେ ଓ ସମ୍ମାନୀତ ମଧ୍ୟ ହୋଇଥିଲେ । ସେଥିପାଇଁ ରଣପୁର ଦରବାରର ପ୍ରିୟ ହେବାର ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରି ସେହି ଅଞ୍ଚଳରେ ସାମାଜିକ ଓ ଅର୍ଥନୀତିକ ନ୍ୟାୟ ପ୍ରତିଷ୍ଠା ପାଇଁ ନିଜେ ଏକ ସ୍ୱାଧୀନ ଓ ଆତ୍ମମର୍ଯ୍ୟାଦାର ବାଟ ବାଛି ନେଇଥିଲେ । ତାଙ୍କର ଜଣେ ଆତ୍ମୀୟ ସ୍ୱର୍ଗତଃ ଗୋବିନ୍ଦ ଚନ୍ଦ୍ର ଦାସ ଯେତେବେଳେ ବିହାର ଓଡ଼ିଶାର ରାଜଧାନୀ ପାଟନା ସହରରେ ଅଧ୍ୟୟନ କରୁ-ଥିଲେ ଚଣ୍ଡୀ ଭାଇନା ଉଚ୍ଚ ଶିକ୍ଷା ପାଇଁ ଗୋବିନ୍ଦବାବୁଙ୍କ ପାଖେ ରହି ଅଧ୍ୟୟନରତ ଥିଲେ । ସେତେବେଳେ ସ୍ୱର୍ଗତଃ ଦୀନବନ୍ଧୁ ସାହୁ ମଧ୍ୟ ପାଟଣାରେ ଏମ୍. ଏ.

ଓ ଆଇନ ଗ୍ରନ୍ଥ ଭବରେ ରହୁଥିଲେ । ଦୀନବନ୍ଧୁ ବାବୁଙ୍କ ସହିତ ଚଣ୍ଡୀ ଭଇନାଙ୍କ ବେଶ୍ ଘନିଷ୍ଠତା ଥିଲା । କାରଣ ଉଭୟଙ୍କର ଜୀବନର ଲକ୍ଷ୍ୟ ଓ ଲକ୍ଷ୍ୟ ସାଧନ ପାଇଁ ନିଷ୍ଠା, କଠୋର ଶ୍ରମ ଆଦର୍ଶଗତ ମିଳନ ମଧ୍ୟ ଥିଲା । ଦୀନବନ୍ଧୁ ବାବୁ ପରବର୍ତ୍ତୀ ସମୟରେ ରାଜ୍ୟରେ ପ୍ରତିଷ୍ଠିତ କଂଗ୍ରେସ ନେତା ଭାବେ ମନ୍ତ୍ରୀ ପରିଷଦର ସଭ୍ୟ ହେଲେ ଏବଂ ପରେ ରାଜ୍ୟର ଆଡ଼ଭୋକେଟ୍ ଜେନେରାଲ ଦାୟିତ୍ୱ ତୁଲାଇଲେ । ଚଣ୍ଡୀ ଭଇନା ମଧ୍ୟ ଉପାଧି ପାଇଁ କୌଣସି ଆଗ୍ରହ ପ୍ରକାଶ ନ କରି ଗଡ଼ଜାତ ଅଞ୍ଚଳର ନିରନ୍ନ ନିଷ୍ପେଷିତ ପ୍ରଜାଙ୍କ ସ୍ୱାର୍ଥ ପାଇଁ ନିଜକୁ ଉତ୍ସର୍ଗ କରିବା ସହିତ ରଣପୁର ଦରବାର ତଥା ଶାସନରେ ନିଜର ଦାୟିତ୍ୱ ପ୍ରତି ଅବଜ୍ଞା କରି ଆଇନ ବ୍ୟବସାୟରେ ନିଜର ପ୍ରତିଷ୍ଠା ବଜାୟ ରଖି, ପ୍ରଜା ଆନ୍ଦୋଳନରେ ସକ୍ରୀୟ ସହଯୋଗ କଲେ । ରଣପୁର, ନୟାଗଡ଼, ଦଶପଲ୍ଲା ଓ ଖଣ୍ଡପଡ଼ା ଦରବାରଙ୍କ ଅତ୍ୟାଚାରରେ ଶୀକାର ହୋଇଥିବା ଲୋକଙ୍କୁ ମଦତ୍ ଦେବା ସହିତ ନ୍ୟାୟାଳୟରେ ବିନା ଫିସ୍‌ରେ ସେମାନଙ୍କୁ ଆଇନ ସହାୟତା ଦେଇ ବହୁ ସୁନାମ ଅର୍ଜନ କରିବାରେ ସଫଳ ହୋଇଥିଲେ । ରଣପୁର ଦରବାରର ପ୍ରଜାଙ୍କ ଉପରେ ଅକଥନୀୟ ଅତ୍ୟାଚାର ବିରୁଦ୍ଧରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ତତ୍କାଳୀନ ନିଷ୍ଠୁର ପଲିଟିକାଲ ଏଜେଣ୍ଟ ବେଜେଲଗେଟ୍‌ର ଅମାନୁଷିକ ଦମନ, ଓ ପ୍ରଜାମେଳିରେ ତାର ହତ୍ୟା ପରେ, ରଣପୁର ରାଜ୍ୟର ହଜାର ହଜାର ନିରାଶ୍ରୟ ପ୍ରଜା ରାଜ୍ୟ ଛାଡି ଚାଲିଗଲେ ଓ ତତ୍କାଳୀନ ବ୍ରିଟିଶ ସରକାରର ଦମନଲୀଳାର ଇତିହାସ ଏବେ ମଧ୍ୟ ବଞ୍ଚିଥିବା ବହୁ ବୟସ୍କ ଲୋକଙ୍କ ସ୍ମୃତି-ପଟରେ ଜାଗ୍ରତ ରହିଛି । ସେଇ ସମୟରେ ଚଣ୍ଡୀ ଭଇନା ମଧ୍ୟ ଆନ୍ଦୋଳନ ସହିତ ତାଙ୍କର ନିଗୁଢ଼ ପରୋକ୍ଷ ସମ୍ପର୍କ ଥିବା ସନ୍ଦେହ କରଯାଉଥିଲେ ମଧ୍ୟ ନିରାଶ୍ରୟ ଲୋକଙ୍କ ମନରେ ସାହସ ଓ ବିଶ୍ୱାସ ସୃଷ୍ଟି କରି ଆଇନ ସହାୟତା ପାଇଁ ପ୍ରାଣପଣେ ଉଦ୍ୟମ ଆରମ୍ଭ କରିଥିଲେ । ଏହି ଆନ୍ଦୋଳନରେ ଅବଶେଷରେ ୨ ଜଣ ସଂଗ୍ରାମୀଙ୍କୁ ଫାଶି ହୁକୁମ ହେଲା । ରଘୁ ଦିବାକର ଫାଶି ପାଇ ସହୀଦ ହେଲେ । ଆଜି ତାହା ଗଡ଼ଜାତ ଆନ୍ଦୋଳନର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ସେହି ଆନ୍ଦୋଳନ ଫଳରେ ୧୯୩୬ ମସିହା ଏପ୍ରିଲ ମାସର ପ୍ରଥମ ଦିନ ୬ଟି ଜିଲ୍ଲାକୁ ନେଇ ପ୍ରତିଷ୍ଠିତ ଖଣ୍ଡବିଖଣ୍ଡିତ ଓଡ଼ିଆ ଭାଷାଭାଷି ଅଞ୍ଚଳ ଏକ କ୍ଷୁଦ୍ର ରାଜ୍ୟ ରୂପ ନେଇଥିବା ଓଡ଼ିଶା, ଏକ ପୂର୍ଣ୍ଣାଙ୍ଗ ଓଡ଼ିଶାରେ ପରିଣତ ହେଲା ୧୯୪୮ ମସିହାର ଏକ ଐତିହାସିକ ଚୁକ୍ତି ଫଳରେ । ତାର ସ୍ରଷ୍ଟା ଥିଲେ ଉତ୍କଳ କେଶରୀ ହରେକୃଷ୍ଣ ମହତାବ, ତତ୍କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ସ୍ୱାଧୀନତା ସଂଗ୍ରାମର ଲୌହ ମାନବ ଅଗ୍ରଗାମୀ

ନେତା ଭାରତର ଉପ ପ୍ରଧାନମନ୍ତ୍ରୀ ତଥା ଗୃହମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ । ମୁଁ ସେତେବେଳେ ପାଟଣାରୁ ଏମ୍. ଏ. ଓ 'ଲ' ଶେଷ କରି ପୁରୀରେ ଆଡ଼ଭୋକେଟ୍ ଓ ମ୍ୟୁନିସିପାଲିଟିର ଭାଇସ୍‌ଚେୟାରମ୍ୟାନ ଥାଏ । ସ୍ୱାଧୀନତା ଆନ୍ଦୋଳନର ଉତ୍ସାହ, ଆତ୍ମୋତ୍ସର୍ଗ, ଉନ୍ମାଦନା ସହିତ ଯେଉଁମାନେ ସାମିଲ ହୋଇଛନ୍ତି ସେମାନେ, ଆଜିର ଭାରତୀୟର ରାଜନୀତିକ, ସାମାଜିକ ଓ ନୈତିକ ଜୀବନର ଶୋଚନୀୟ ଅବକ୍ଷୟ, ଅର୍ଥ, ଧନବଳ ଓ ବାହୁବଳର ନୂତନ ସଂସ୍କୃତି ଭାରତୀୟ ଜନଜୀବନକୁ କଳୁଷିତ କରି ଦୁନିଆ ଦରବାରରେ ନିନ୍ଦିତ କରିବାରେ କିପରି ସହାୟକ ହୋଇଛି ତାହା ଦେଖିଲେ ଆମେ ସ୍ୱାଧୀନତାର ଗତ ୫୦ ବର୍ଷ ମଧ୍ୟରେ ଦେଶକୁ କେତେ ତଳକୁ ନେଇ ଆସିଛୁ ତାହା ବିଶ୍ୱାସ କରିହେବନି । ଆମେ ଆଜି କେବଳ ଭ୍ରଷ୍ଟାଗ୍ରସ୍ତ ଓ ମୂଲ୍ୟବୋଧହୀନ ରାଜନୀତି ସଂସ୍କୃତି, କ୍ଷମତା ଦଖଲର ଅସରନ୍ତି ଲୋଭ ଓ ଉନ୍ମାଦନାରେ ନିଜକୁ, ଦେଶକୁ ଓ ସ୍ୱାଧୀନତା ସଂଗ୍ରାମର ସଂକଳ୍ପକୁ ସମ୍ପୂର୍ଣ୍ଣଭାବେ ଭୁଲି ଯାଇଛୁ । ଆଜି ଗାନ୍ଧୀ, ଗୋପବନ୍ଧୁ, ବିନୋବା ସ୍ୱର୍ଗରେ ରହି କେବଳ ଅଶ୍ରୁ ବିସର୍ଜ୍ଜନ ଛଡ଼ା ନିଜର ଦୟନୀୟ ଅସହାୟତାରେ ତାଙ୍କର ଦାୟାଦମାନଙ୍କୁ ଅଭିଶାପ ଦେଉଥିବେ ଭିନା ? ସେତେବେଳେ ଶିକ୍ଷିତ ଯୁବକ ମନରେ ଥିଲା ସ୍ୱାଧୀନତା ପାଇଁ ଆତ୍ମବଳିଦାନ ଓ ଚରମ ସ୍ୱାର୍ଥତ୍ୟାଗ, ଆଜି କେବଳ କ୍ଷମତା ପାଇଁ ଆଞ୍ଚଳିକତା, ଜାତିଆଣଭାବ, ସାମ୍ପ୍ରଦାୟିକତା ଓ ବ୍ୟକ୍ତିକେନ୍ଦ୍ରୀକ ଦୃଷ୍ଟିକୋଣ ଓ ଧର୍ମାନ୍ଧତା ଦେଶର ସ୍ୱାଧୀନତାକୁ ବିପନ୍ନ କରିବାକୁ ବସିଛି । ଦେଶକୁ କ୍ରମଶଃ ଦୁର୍ବଳ ଓ ଶକ୍ତିହୀନ କରିବାରେ ସହାୟକ ହୋଇଛି । ଏହାହିଁ ଗତ ୫୦ ବର୍ଷରେ ଦେଶ ପ୍ରତି ଆମ ସମସ୍ତଙ୍କର ଅବଦାନ ଏ ସମ୍ପର୍କରେ ବାରମ୍ବାରରେ ଆଲୋଚନା ହେବା ସମୀଚୀନ ।

ଚଣ୍ଡୀ ଭାଇନାଙ୍କୁ ଜଣେ ପ୍ରତିଷ୍ଠିତ ଆଇନଜୀବୀ ଭାବରେ ମୁଁ ଦେଖିଛି । ତାଙ୍କର ସାଧୁତା, ସଚ୍ଚୋଟତା, ଦକ୍ଷତା ଏବଂ ବିଗ୍ରହଳୟରେ ତାଙ୍କର ଆଇନ ଉପସ୍ଥାପନ କରିବାର ଶୈଳୀ ମତେ ମୁଗ୍ଧ କରିଥିଲା । ସରକାରୀ ଓକିଲ ଭାବରେ ଓ ପରେ ଜଣେ ସହଯୋଗୀ ଆଇନଜୀବୀ ଭାବରେ ତାଙ୍କ ସହିତ ପୁରୀ ଓ ନୟାଗଡ଼ରେ ଜଜକୋର୍ଟ ଓ ଅନ୍ୟାନ୍ୟ କୋର୍ଟମାନଙ୍କରେ କାର୍ଯ୍ୟ କରିବାର ସୁଯୋଗ ମଧ୍ୟ ପାଇଛି । ସେ ଓଡ଼ିଶା ହାଇକୋର୍ଟରେ ମଧ୍ୟ ଅନେକ ସମୟରେ 'କେଶ' ନିଜେ ସ୍ୱାଧୀନ ଭାବରେ, ବିଚକ୍ଷଣ ଭାବରେ ତାଙ୍କର ଆଇନରେ ଜ୍ଞାନର ପରାକାଷ୍ଠା ଦେଖାଇଛନ୍ତି ଏହା ତାଙ୍କ ସମ୍ପର୍କରେ ଆସିଥିବା ଆଇନଜୀବୀମାନେ ଏବେ ମଧ୍ୟ ସ୍ୱୀକାର କରିବେ ।

ବେଶଭୂଷାରେ ସେ ଥିଲେ ଅତ୍ୟନ୍ତ ସରଳ । ଖଦୀ ପୋଷାକ ଛଡ଼ା ଆଉ କିଛି ପିନ୍ଧୁ ନଥିଲେ । ଫିସ୍ ପାଇଁ ଲୋଭ ନଥିଲା । ଅନେକ ସମୟରେ ବିନା ପାରିଶ୍ରମିକରେ ମଧ୍ୟ ସେହି ନିଷ୍ଠା ଓ ଦକ୍ଷତା ସେ ପ୍ରକାଶ କରୁଥିଲେ । ତାଙ୍କର ନମ୍ରତା, କୋର୍ଟ ପ୍ରତି ସମ୍ମାନ, ଦକ୍ଷତା ଓ ଆଇନ ଚର୍ଚ୍ଚାରେ ପଟୁତା ଯେ ଦେଖିଛନ୍ତି ଆଜି ଆଇନ ବ୍ୟବସାୟର ମାନ କିପରି ହ୍ରାସ ପାଇଛି ଓ ଅସାଧୁତା କିପରି କ୍ଷିପ୍ର ଗତିରେ ଆଇନଜୀବୀମାନଙ୍କର ସମ୍ମାନହାନି ଘଟାଉଛି ତାହା ଅନୁମାନ କରି ହେବ ।

ସେ "ସିଭିଲ କେଶ", "ରେଭିନ୍ୟୁ" ଓ ଫୌଜଦାରୀ ସବୁ ସ୍ତରର ମକଦ୍ଦମା ପରିଚାଳନା କରୁଥିଲେ ମଧ୍ୟ, ସିଭିଲ ମକଦ୍ଦମାରେ ତାଙ୍କର ପାରଦର୍ଶିତା ଅଧିକ ଥିଲା । ତାଙ୍କର ଆଇନର ସୂକ୍ଷ୍ମ ତର୍ଜମା ଓ ବିନା ଉତ୍ତେଜନାରେ କୋର୍ଟରେ "ଜବାବ ସୁଆଲ" ବିଚାରପତିମାନଙ୍କର ତାଙ୍କ ପ୍ରତି ସମ୍ମାନ ଆକର୍ଷଣ କରୁଥିଲା ଏଥିରେ ସନ୍ଦେହ ନାହିଁ ।

ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ଚଣ୍ଡୀ ଭଇନାଙ୍କ ସୁଯୋଗ୍ୟ ପୁତ୍ର ଉମାଶଙ୍କର ମିଶ୍ର I. A. S. ପିତାଙ୍କ ସ୍ମୃତି ଜାଗ୍ରତ କରାଇ ନୂତନ ପିଢ଼ୀଙ୍କର ପ୍ରେରଣା ପାଇଁ ଚଣ୍ଡୀ ଭଇନାଙ୍କ ସମ୍ପର୍କରେ କିଛି ବ୍ୟକ୍ତି ବିଶେଷଙ୍କ ସ୍ମୃତିଚାରଣକୁ ନେଇ ଏକ ସ୍ମରଣିକା ପ୍ରକାଶ କରିବା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ଏପରି ଉଦ୍ୟମ ସ୍ୱାଗତଯୋଗ୍ୟ ଓ ଅଭିନନ୍ଦନୀୟ । ଆମ ରାଜ୍ୟରେ ପୂଜ୍ୟ ପୂଜାର ସଂସ୍କୃତି କ୍ରମଶଃ ସଙ୍କୁଚିତ ହେବାକୁ ବସିଲାଣି ।

ଚଣ୍ଡୀ ଭଇନାଙ୍କ ଆଦର୍ଶ ଜୀବନ, କର୍ତ୍ତବ୍ୟନିଷ୍ଠା ଉତ୍ସର୍ଗୀକୃତ କର୍ମ ନୂତନ ପିଢ଼ୀଙ୍କ ପାଇଁ ପ୍ରେରଣାଦାୟକ ହେଉ ଏହାହିଁ ଜଗନ୍ନାଥଙ୍କ ପାଖେ ପ୍ରାର୍ଥନା ।

ଏହି ଅବସରରେ ଚଣ୍ଡୀ ଭଇନାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାର ସୁଯୋଗ ପାଇଥିବାରୁ ମୁଁ ଶ୍ରୀ ଉମାଶଙ୍କରଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ଶ୍ରୀ ଗଙ୍ଗାଧର ମହାପାତ୍ର

# ହଜିଲା ଦିନର ସ୍ମୃତି

ଶ୍ରୀ ମନମୋହନ ମିଶ୍ର
(ବିପ୍ଳବୀ ଚିନ୍ତାନାୟକ)

ଚଣ୍ଡେଶ୍ୱର ମିଶ୍ରଙ୍କ ସହିତ ମୋର ପ୍ରତ୍ୟକ୍ଷ ପରିଚୟ ହେବା ପୂର୍ବରୁ ତାଙ୍କର ଲେଖା ସହିତ ମୋର ପରିଚୟ ଘଟିଥିଲା, ପଣ୍ଡିତ ନୀଳକଣ୍ଠ ଦାସଙ୍କର ସମ୍ପାଦିତ ମାସିକ 'ନବଭାରତ'ର ପୃଷ୍ଠାରେ । ତାହା ଗୋଟିଏ ଗଳ୍ପ ଥିଲା । ସେତେବେଳେ ମୁଁ ରେଭେନ୍‌ସା କଲେଜର ଇଂରାଜୀ ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ଥିଲି । ମନେ ପଡ଼ୁଛି, ସେତେବେଳେ 'ନବଭାରତ'ର ସମ୍ପାଦନା କାର୍ଯ୍ୟ (ପଣ୍ଡିତ ନୀଳକଣ୍ଠ ଦାସଙ୍କର କେନ୍ଦ୍ର ଆସେମ୍ବ୍ଲି ଅଧିବେଶନ ବେଳର ଅନୁପସ୍ଥିତି ବେଳେ) ସ୍ୱର୍ଗତଃ ଚିନ୍ତାମଣି ମିଶ୍ର ପ୍ରାୟ ବହନ କରୁଥିଲେ । ଏହି କାର୍ଯ୍ୟରେ ମୁଁ ସାମୟିକ ଭାବରେ ତାଙ୍କୁ ସାହାଯ୍ୟ କରିବାର ସୁଯୋଗ ପାଇଥିଲି । ସାଧାରଣତଃ ସମ୍ପାଦନ ପାଇଁ ମୋ ଭାଗରେ କବିତା ଓ ଗଳ୍ପ ଗୁଡ଼ିକ ପଡ଼ୁଥିଲା । ଥରକର ଗୋଟିଏ ମାସର ଗଳ୍ପ ବିଭାଗର ସମ୍ପାଦନା ବେଳେ ମୁଁ ତାଙ୍କୁ ପଚାରିଥିଲି—"ଚଣ୍ଡେଶ୍ୱର ମିଶ୍ର" କିଏ ? ସେ କହିଲେ "କାହିଁକି ? କ'ଣ ହେଲା ?" ମୁଁ କହିଲି "ତାଙ୍କର ଗୋଟିଏ ଗଳ୍ପ ଏ ଫାଇଲ୍‌ରେ ଅଛି ।" ସେ ମୋ ଆଡ଼କୁ ପ୍ରଶ୍ନବାଚୀ ଆଖିରେ ଚାହିଁଲେ । ମୁଁ କହିଲି 'ପ୍ରଚଣ୍ଡ ଗଳ୍ପ' । ସେହି 'ପ୍ରଚଣ୍ଡ' ଗଳ୍ପଟି ପ୍ରକାଶିତ ହେଲାପରେ ଆଜିକୁ ଏକାବନ ବର୍ଷ ତଳର ତାହାର ଶୀର୍ଷକ ଓ କଥାବସ୍ତୁ ମୋ ମନରୁ ହଜି ଯାଇଛି । ସ୍ୱର୍ଗୀୟ ଚଣ୍ଡେଶ୍ୱରଙ୍କର ସାହିତ୍ୟ କୃତିର କୌଣସି ସଙ୍କଳନ ଦେଖିଲେ ମୁଁ ସେହି ଗଳ୍ପଟି ନିଶ୍ଚୟ ଚିହ୍ନି ପକାଇ ନେବି ।

ସନ୍ଦେହହୀନ ଭାବରେ କହିପାରୁ ନାହିଁ, କିନ୍ତୁ ତଥାପି ମୋର ମନେ ପଡ଼ୁଛି ୧୯୩୪-୩୫ ବେଳର ଗୋଟିଏ ଦିନର କଥା । ରଣପୁରର ଜଣେ ଛାତ୍ର

ଶ୍ରୀନିବାସ ମହାପାତ୍ର ଫାଷ୍ଟ ଇଅରରେ ମୋର ସହପାଠୀ ଥିଲେ । ସେ କେବଳ ମୋ ଠାରୁ ବୟସରେ ବଡ଼ ନ ଥିଲେ ଏକାଡେମିକ୍ ବୟସରେ ମଧ୍ୟ ବଡ଼ ଥିଲେ । କାରଣ ସେ ଦୁଇ ବର୍ଷ ଆଇ. ଏସ୍. ସି. ପଢ଼ି ସେଥିରେ କୃତକାର୍ଯ୍ୟ ନ ହୋଇ ଆଇ. ଏ. ରେ ପ୍ରଥମ ବାର୍ଷିକ ଶ୍ରେଣୀରେ ଯୋଗ ଦେଇଥିଲେ । ଓଡ଼ିଶା ହାଇକୋର୍ଟର ପୂର୍ବତନ ବିଗ୍ରରପତି ବିଜୟ ରୟ ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ସେତେବେଳେ ରେଭେନ୍ସା କଲେଜ ଆଜିଭଳି ଏଡ଼େ ଛାତ୍ର-ସଙ୍କୁଳ ସମୁଦ୍ର ନ ଥିଲା । ଶ୍ରୀନିବାସ ମହାପାତ୍ରଙ୍କର ଆତ୍ମୀୟ ଜଣେ ଚଣ୍ଡୀ ବାବୁ ଆଇନ କ୍ଲାସରେ ପଢ଼ୁଥିବାର ଏବେ ମୋର ମନେ ପଡ଼ୁଛି । ସେତେବେଳେ ଆଇନ ଛାତ୍ରମାନେ ମଧ୍ୟ ପୂର୍ବ ବା ପଶ୍ଚିମ ଛାତ୍ରାବାସରେ ରହୁଥିଲେ । ତେଣୁ ମୋର ପୂର୍ବସୂଚ୍ଚି ଭବରେ ଚଣ୍ଡୀବାବୁ ସେତେବେଳେ ଶ୍ରୀ ଗଙ୍ଗାଧର ମହାପାତ୍ର, ଦୟାନିଧି ଚୌଧୁରୀ, ବୈଦ୍ୟନାଥ ମିଶ୍ରଙ୍କର ବୋଧହୁଏ ସହପାଠୀ କିମ୍ବା ସମସାମୟିକ ଥିଲେ ।

ହଠାତ୍ ଚଣ୍ଡେଶ୍ୱର ମିଶ୍ର ରଣପୁର ବେଜେଲଗେଟ୍ ହତ୍ୟାକାଣ୍ଡ ଯୋଗୁଁ ରାଜନୈତିକ ଓ ସାମ୍ବାଦିକ ମହଲରେ ପରିଚିତ ହୋଇଗଲେ । ୧୯୪୦ ମସିହାରେ ଗାନ୍ଧିଜୀଙ୍କର ନେତୃତ୍ୱରେ ପରିଚାଳିତ ବ୍ୟକ୍ତିଗତ ସତ୍ୟାଗ୍ରହବେଳେ ବ୍ରହ୍ମପୁର ଜେଲର ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଥିଲାବେଳେ ବେଜେଲଗେଟ୍ ହତ୍ୟା ଘଟଣାର ସମସ୍ତ ବିଷୟ ଓ ସେଥି ସଙ୍ଗେ ସଙ୍ଗେ ସ୍ୱର୍ଗୀୟ ଚଣ୍ଡେଶ୍ୱର ମିଶ୍ରଙ୍କର ପ୍ରସଙ୍ଗ ଏକ ମୁଖ୍ୟ ସ୍ଥାନ ଅଧିକାର କରିଥିଲା । ପ୍ରସଙ୍ଗତଃ ଯେଉଁଦିନ ବେଜେଲଗେଟ୍ ହତ୍ୟା ଘଟିଥିଲା ସେହିଦିନ ପ୍ରାୟ ଦିନ ୧୧ଟାଯାଏ ଏହି ଲେଖକ ମହତାବ ବାବୁଙ୍କର ବାଖରବାଦର ବସାରେ କୌଣସି କାର୍ଯ୍ୟ ନିବନ୍ଧନରେ ଅନ୍ୟ ଜଣେ ଛାତ୍ରଙ୍କ ସହିତ ଯାଇଥିଲା । ସେଠାରେ ସହୀଦ ରଘୁନାଥ (ରଣପୁର ପ୍ରଜାମଣ୍ଡଳର ସଭାପତି) ମହତାବ ବାବୁଙ୍କୁ ରଣପୁରକୁ ନେବା ପାଇଁ ଆସି ପହଞ୍ଚିଥିଲେ । ମହତାବ ବାବୁ ଯଦି ଉକ୍ତ ୧୨ଟା ବେଳେ ବାହାରି ଯାଇ ପାରିଥାଆନ୍ତେ ହୁଏତ ଘଟଣା ଭିନ୍ନ ପ୍ରକାର ହୋଇ ଥାଆନ୍ତା । କିନ୍ତୁ ମହତାବ ବାବୁଙ୍କର ସେ କାଳର ଧଡ଼ଡ଼ା ମୋଟର ଗାଡ଼ି ବାଲୁବଜାର ଠାରେ ଅଚଳ ହେବାରୁ ସେ ଅଟକି ଗଲେ ଓ କଟକ ଛାଡ଼ିବାବେଳକୁ ପ୍ରାୟ ଗୋଟାଏ ବେଳ ହୋଇ ଯାଇଥିଲା । ଟାଙ୍ଗି ଥାନାରେ ପହଞ୍ଚି ସେଠାରେ ପୋଲିସ ଷ୍ଟେସନରେ ସେ କେତେଟା ବାଜିଛି ବୋଲି ପୋଲିସ ଅଫିସର ଇନଚାର୍ଜଙ୍କୁ ପଚାରିଥିଲେ । କାରଣ ସେତେବେଳକୁ ସେ ଆଶଙ୍କା କରି ସାରିଥିଲେ ରଣପୁରରେ କୌଣସି ବିପଜ୍ଜନକ ପରିସ୍ଥିତି ଘଟିଯିବଣି । ଚନ୍ଦପୁର ପାର ହୋଇ ମହତାବ ବାବୁ ସ୍ୱର୍ଗୀୟ ରଘୁନାଥଙ୍କ ସହିତ ଗାଡ଼ିରେ ଗଲାବେଳେ ବାଟରେ ଦଳ ଦଳ ଲୋକ ।

'କମ୍ପାନି ମରିଗଲା' ବୋଲି ତାଙ୍କୁ କହିଥିଲେ । ସେତେବେଳେ ମହତାବ ବାବୁ ସେମାନଙ୍କୁ କହିଥିଲେ "ତୁମ୍ଭେମାନେ ରଣପୁରର ସୀମା ଛାଡ଼ି ପଳାଅ ।"

ରଣପୁରରେ ସେତେବେଳେ ଆଣ୍ଟିଙ୍କ ଦେଓ୍ୱାନ ଥିବା ଚଣ୍ଡେଶ୍ୱର ମିଶ୍ର ମହତାବ ବାବୁଙ୍କୁ ଅଶ୍ରୁପୂର୍ଣ୍ଣ ନୟନରେ ଗୁହାରିବାର ମହତାବ ବାବୁ ବାରମ୍ବାର ଉଲ୍ଲେଖ କରିଛନ୍ତି ଓ ଭାରତ ସରକାରଙ୍କ ମିଲିଟାରୀ ଇଣ୍ଟେଲିଜେନ୍ସଙ୍କର ଅନୁସନ୍ଧାନ ବେଳେ ଓ ମହାତ୍ମା ଗାନ୍ଧିଙ୍କର ବାର୍ତ୍ତାବହ ରୂପେ ଆସିଥିବା ଭାରତ ପାର୍ଲିଆମେଣ୍ଟର ମହିଳା ସଦସ୍ୟାଙ୍କର ଜବାବ ସୁଆଲରେ ଯେପରି ଦେଶପ୍ରେମୀ, ନିର୍ଭୀକ ଓ ସଚ୍ଚୋଟ ବୟାନ ଦେଇଥିଲେ ସେ କଥାର ମହତାବ ବାବୁ ଭୂୟସୀ ପ୍ରଶଂସା କରିଛନ୍ତି ।

ତାଙ୍କର ଦେହାନ୍ତ ହେବାର ତେଇଶି ବର୍ଷ ପରେ ଏହି କୃତବିଦ୍ୟ ଓ ଦେଶାନୁରାଗୀ ବ୍ୟକ୍ତିଙ୍କର ଦଶାହ ପାଳନ ଏକ ସ୍ପୃହଣୀୟ ଘଟଣା । ତାଙ୍କର ସମସ୍ତ କୃତିତ୍ୱ ବିଷୟରେ ମୋର ଯଥେଷ୍ଟ ପରିଚୟ ନ ଥିବାରୁ ଏହି ଲେଖକ ଲଜ୍ଜିତ ହେଉଛି ।

ଆଶାକରେ, ମୋ ଭଳି ଅଜାଣିବାର ବ୍ୟକ୍ତିମାନେ ଏହି ସ୍ମରଣିକାଟି ପ୍ରକାଶ ପରେ ଅନେକ ନୂତନ ବିଷୟ ଜାଣିବାକୁ ପାଇବେ ଓ ରଣପୁର ପ୍ରଜା ଆନ୍ଦୋଳନର କେତେକ ଅବ୍ୟକ୍ତ ବିଷୟ ଉଦ୍‌ଘାଟିତ ହେବ ।

ମନମୋହନ ମିଶ୍ର



# ଚଣ୍ଡେଶ୍ୱର ବାବୁଙ୍କ ସ୍ମୃତି

ଶ୍ରୀ ସୁରେନ୍ଦ୍ର ମହାନ୍ତି
(ପୂର୍ବତନ ସାଂସଦ ଓ ବିଶିଷ୍ଟ ସାହିତ୍ୟିକ)

୧୯୪୮ ମସିହାରେ ଗଣତନ୍ତ୍ର ପରିଷଦର ସଂଗଠନ ଉଦ୍ଦେଶ୍ୟରେ, ମୁଁ ଓଡ଼ିଶାର ପୂର୍ବତନ ଦେଶୀୟ ରାଜ୍ୟସବୁ ବୁଲୁଥିବା ବେଳେ ଥରେ ରଣପୁର ଗଡ଼ରେ ରାଜମାତା ବସନ୍ତ ମଞ୍ଜରୀ ଦେବୀଙ୍କ ବୈଠକଖାନାରେ ମୋର ପ୍ରଥମ ସାକ୍ଷାତ ହୋଇଥିଲା, ଚଣ୍ଡେଶ୍ୱର ବାବୁଙ୍କ ସହିତ । ଏବେବି ମନେ ପଡ଼ୁଛି, ତାଙ୍କର ଚେହେରା । ଗୌରବର୍ଣ୍ଣ । ମୁହଁରେ ସବୁବେଳେ ଲାଗି ରହିଥିଲା, କ୍ଷୀଣ ହସର ରେଖା । ସେ ପିନ୍ଧିଥିଲେ, ଖଣ୍ଡେ ଖଦଡ଼ ଧୋତି ଆଉ ଖଦଡ଼ ପଞ୍ଜାବୀ । ତାଙ୍କ ଚେହେରାରୁ ମୁଁ ଅନୁମାନ କରି ନେଇଥିଲି, ସେ ଥିଲେ ବୋଧହୁଏ ସ୍ଥାନୀୟ କୌଣସି କଂଗ୍ରେସ ନେତା ବା କର୍ମୀ । କିନ୍ତୁ ବିସ୍ମିତ ହେଲି, ବସନ୍ତ ମଞ୍ଜରୀ ଦେବୀ, ତାଙ୍କ ସହିତ ମୋର ଔପଚାରିକ ପରିଚୟ କରାଇ ଦେଇ କହିଲେ...... "ଇଏ ଚଣ୍ଡେଶ୍ୱର ବାବୁ । ଆମ ଷ୍ଟେଟର ଆସିଷ୍ଟାଣ୍ଟ ଦେଓ୍ୱାନ୍ ଥିଲେ ।" କିନ୍ତୁ ସେକାଳେ ଗୋଟିଏ ଗଡ଼ଜାତର ଜଣେ ଆସିଷ୍ଟାଣ୍ଟ ଦେଓ୍ୱାନ୍‌ଙ୍କର ଖଦଡ଼ ପୋଷାକ ମୋତେ କିଛି ପରିମାଣରେ ବିସ୍ମିତ କରି ଦେଇଥିଲା । ତେବେ ସେତେବେଳେ, ବସନ୍ତ ମଞ୍ଜରୀ ଦେବୀଙ୍କ କଂଗ୍ରେସ ପ୍ରତି ପ୍ରଚ୍ଛନ୍ନ ସମର୍ଥନ ଥିବା ଦୃଷ୍ଟିରୁ ଚଣ୍ଡେଶ୍ୱର ବାବୁଙ୍କ ଖଦଡ଼ ପୋଷାକ ମୋତେ ବିସ୍ମିତ କରି ନଥିଲା ।

ଆଉ ଥରେ ସେଇ ରଣପୁର ଗଡ଼ରେ ତାଙ୍କ ସହିତ ମୋର ଦ୍ୱିତୀୟ ସାକ୍ଷାତ ହୋଇଥିଲା । ସେଦିନ ମୁଁ ତାଙ୍କୁ ପଚାରିଥିଲି, ତାଙ୍କ ଖଦଡ଼ ପୋଷାକ କଥା । ସେ ଉତ୍ତର ଦେଇଥିଲେ, ବାଙ୍କୀ ହାଇସ୍କୁଲରେ ସେ ଛାତ୍ର ଥିବା ଦିନୁ, ବରାବର ଖଦଡ଼ ପିନ୍ଧି ଆସୁଛନ୍ତି । ସେଥର କଥା ପ୍ରସଙ୍ଗରେ ମୁଁ ତାଙ୍କୁ ପଚାରି- ଥିଲି, ବେଜେଲଗେଟ୍ ହତ୍ୟାର କାହାଣୀ । ସେ କିଛିକ୍ଷଣ ନୀରବ ରହି ଉତ୍ତର

ଦେଇଥିଲେ.....''ସିଏ ଏକ ଦୁର୍ଭାଗ୍ୟଜନକ ଘଟଣା । କିନ୍ତୁ ସେତେବେଳେ ପ୍ରଜା ଆନ୍ଦୋଳନକୁ ମୁଁ ସମ୍ଭାଳି ପାରି ନଥିବା ଅଭିଯୋଗରେ ମୁଁ ଚାକିରିରୁ ବରଖାସ୍ତ ହୋଇଥିଲି । କ୍ଷୁଦ୍ର ସର୍ପର ବିଷ ଉତ୍କଟତର ଥିବାପରି, ରଣପୁର ଗୋଟିଏ ଛୋଟିଆ ଗଡ଼ଜାତ ହେଲେ ହେଁ ଏଠାରେ ପ୍ରଜାପୀଡ଼ନର ମାତ୍ରା ଥିଲା ଟିକିଏ ବେଶୀ । ପ୍ରଜାମାନେ ମେଳିଆ ହେଲେ । ମୁଁ ସେମାନଙ୍କୁ ସମ୍ଭାଳନ୍ତି କିପରି, କିଛି ଗୋଟାଏ ମୌଳିକ ପରିବର୍ତ୍ତନ ନ ହେଲେ ?

''ଆଉ ବେଜେଲଗେଟ୍ !''—ମୁଁ ପଚାରିଲି ।

ତକ୍ଷେଶ୍ୱର ବାବୁ ଉତ୍ତର ଦେଲେ, ''ସେଦିନ ନୟାଗଡ଼ରୁ ସୁନାଖଳା ବାଟେ ପଲିଟିକାଲ୍ ଏଜେଣ୍ଟ ବେଜେଲ୍‌ଗେଟ୍ ରଣପୁର ଆସୁଛନ୍ତି ଶୁଣି ହଜାର ହଜାର ପ୍ରଜା ଉଆସ ଦାଣ୍ଡରେ ଏକାଠି ହୋଇଥିଲେ । ସେମାନେ ହୁଏତ ଆସିଥିଲେ, ବେଜେଲ୍‌ଗେଟ୍ ପାଖରେ, ଦରବାର ବିରୁଦ୍ଧରେ କିଛି ନାଲିସ୍ ଜଣାଇବା ପାଇଁ । ସେମାନେ ଥିଲେ ସମ୍ପୂର୍ଣ୍ଣ ଅହିଂସ । କିନ୍ତୁ ବେଜେଲ୍‌ଗେଟ୍ ସୁନାଖଳା ବାଟେ ରଣପୁର ଗଡ଼କୁ ଆସିବା ବେଳେ, ବାଟରେ ଗୋଟାଏ ଗାଁ ଦାଣ୍ଡ ମଝିରେ ଗୁଡ଼ାଏ ଶଗଡ଼ ଛନ୍ଦାଛନ୍ଦି କରି, ଗାଁ ଲୋକେ ରଖି ଦେଇଥିଲେ, ଯାହା ଫଳରେ ବେଜେଲ୍‌ଗେଟ୍‌ର ଗାଡ଼ି ଯିବା ପାଇଁ ବାଟ ଏ ପ୍ରକାର ବନ୍ଦ ହୋଇ ଯାଇଥିଲା । ସେଥିପାଇଁ ତାଙ୍କ ପଛରେ ଗୋଟାଏ ଭ୍ୟାନ୍‌ରେ ଆସୁଥିବା ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସିର ଦଳେ ପୋଲିସ୍ ଗାଁ ଲୋକମାନଙ୍କ ଉପରେ କିଛିଟା ବଳ ପ୍ରୟୋଗ କରି ରାସ୍ତା ସଫା କରାଇଥିଲେ । ପରେ ସେଇ ଲୋକମାନେ ଦୁଇଟା ଶଗଡ଼ରେ ଦୁଇଜଣ ଲୋକଙ୍କୁ ଶୁଆଇ, ସେମାନଙ୍କ ଉପରେ ଧଳା ଚାଦର ଢାଙ୍କି ରାମ ନାମ ସତ୍ୟ ହେ—ଧ୍ୱନୀ ଦେଇ ଉଆସ ଦାଣ୍ଡରେ ପହଞ୍ଚିଗଲେ । ବେଜେଲ୍‌ଗେଟ୍ ସାହେବ ଏ ଦୁଇଜଣ ଲୋକଙ୍କୁ ଆସିବା ବାଟରେ ମାରି ଦେଇଛି ବୋଲି ସେମାନେ କହିଲେ । ବେଜେଲ୍‌ଗେଟ୍ ସେତେବେଳେ ଉଆସ ଭିତରେ ରାଜା ଓ ଦେଓ୍ୱାନ ପ୍ରମୁଖଙ୍କ ସହିତ ରାଜ୍ୟରେ ପ୍ରଜା ବିକ୍ଷୋଭର କାରଣ ସମ୍ପର୍କରେ ଆଲୋଚନା କରୁଥିଲେ । ବେଜେଲ୍‌ଗେଟ୍ ଦୁଇଜଣ ଲୋକଙ୍କୁ ମାରି ଦେଇଥିବା ଶୁଣି ହଜାର ହଜାର ପ୍ରଜା ହଠାତ୍ ବିକ୍ଷୁବ୍‌ଧ ହୋଇ ଉଆସ ଉପରେ ଆକ୍ରମଣ କରିବା ପାଇଁ ବାହାରିଛନ୍ତି ବୋଲି ମୁଁ ବେଜେଲ୍‌ଗେଟ୍‌କୁ ଯାଇ ଜଣାଇଲି । କିନ୍ତୁ ସେ ତ କାହାକୁ ମାରି ନାହାନ୍ତି ବୋଲି କହି ଲୋକଙ୍କୁ ବୁଝାଇବା ପାଇଁ ହଠାତ ଏକୁଟିଆ ବାହାରି ଆସିଲେ । ବେଜେଲ୍‌ଗେଟ୍ ଲୋକଟି ଡେଙ୍ଗା ! ସଙ୍ଗରେ ପୁଣି କୌଣସି ଅଙ୍ଗରକ୍ଷୀ ନଥିଲେ । ତାଙ୍କୁ ଦେଖି ପ୍ରଜାମାନଙ୍କର ସବୁ କ୍ରୋଧ ନିଆଁ ପରି

ହୁତ୍‌ହୁତ୍ ଜଳିଲା । ସେ ବାହାରକୁ ଆସିବା ମାତ୍ରେ ତା' ଉପରେ ପଡ଼ିଲା ଠେଙ୍ଗା ପାହାର । ପ୍ରାଣ ବଞ୍ଚାଇବା ପାଇଁ, ସେ ଉଆସ ଦାଣ୍ଡରେ ଜଣେ ଲୋକର ପିଣ୍ଡା ଉପରକୁ ଉଠିଗଲେ । ସେଇ ପିଣ୍ଡା ଉପରେ ବେଜେଲ୍‌ଗେଟ୍‌କୁ ଲୋକେ ପିଟି ପିଟି ମାରି ପକାଇଲେ । ଏ ପ୍ରକାର ପରିସ୍ଥିତିକୁ ମୁଁ ସମ୍ଭାଳି ଥାଆନ୍ତି କିପରି ?''

ଏହାପରେ ଆଉ ମାତ୍ର ଥରେ ବା ଦୁଇଥର ମୁଁ ରଣପୁର ଆସିଥିଲି । କିନ୍ତୁ ବସନ୍ତମଞ୍ଜରୀ ଦେବୀ ତାଙ୍କ ପ୍ରଜାମଙ୍ଗଳ ଦଳ ସହିତ କଂଗ୍ରେସରେ ମିଶିଯିବା ପରେ ମୋର ରଣପୁର ଯିବା ବନ୍ଦ ହୋଇ ଯାଇଥିଲା । ସେତେବେଳେ ମୁଁ ବୁଝିଥିଲି ଆସିଷ୍ଟାଣ୍ଟ ଦେଓ୍ୱାନ୍ ରୂପେ ଚଣ୍ଡେଶ୍ୱର ବାବୁ ପ୍ରଜାପୀଡ଼କ ନ ଥିଲେ । ବରଂ ଅନେକ କ୍ଷେତ୍ରରେ ପ୍ରଜାମାନଙ୍କ ପ୍ରତି ତାଙ୍କର ଥିଲା ସହାନୁଭୂତି । ୧୯୫୧ ମସିହା ପରଠାରୁ ତାଙ୍କ ସହିତ ମୋର ଆଉ ସାକ୍ଷାତ ହୋଇ ନ ଥିଲା । ଯେଉଁ କେତେଥର ମୁଁ ତାଙ୍କ ସାନ୍ନିଧରେ ଆସିଥିଲି, ମୋର ମନେ ହୋଇଥିଲା ସେ ଥିଲେ ଜଣେ ମେଳାପୀ ପ୍ରକୃତିର ମଣିଷ ।

ଆଜି ତାଙ୍କ ବିଷୟରେ ଲେଖିବା ବେଳେ, ୪୦ ବର୍ଷ ତଳର ବିସ୍ମୃତି ତଳୁ ମୋ ଆଖି ଆଗରେ ଭାସି ଉଠୁଛି, ତାଙ୍କର ସେହି ହସ ହସ ଚେହେରା ।



# ସ୍ମୃତିଚାରଣ

**ଶ୍ରୀ ରଘୁନାଥ ଦାସ**
ପୂର୍ବତନ ସଭାପତି ଏନ୍. ଏ. ସି.

ସ୍ୱର୍ଗତଃ ଚଣ୍ଡେଶ୍ୱର ମିଶ୍ରଙ୍କର ସ୍ମୃତିଚାରଣ କଲାବେଳେ ତାଙ୍କର ନିର୍ଦ୍ଦିଷ୍ଟ କେତୋଟି କଥା ଏବେ ମଧ୍ୟ ମନେପଡୁଛି । ଶ୍ରୀମିଶ୍ର ଯଦିଓ ରଣପୁର ରାମଚନ୍ଦ୍ରପୁର ଗାଁରେ ଜନ୍ମଗ୍ରହଣ କରି କଟକ ସହରରେ ଉଚ୍ଚ ଶିକ୍ଷା ଲାଭକରି ରଣପୁର ରାଜ୍ୟର ଆସିସ୍ଟାଣ୍ଟ ଦିଓ୍ୱାନ୍ ଥିଲେ ସେ ମହାଶୟଙ୍କୁ ମୁଁ ଉକ୍ତ ରାଜ୍ୟର ପ୍ରଜାମଣ୍ଡଳ ଆନ୍ଦୋଳନ ତଥା ବେଜେଲ୍ ଗେଟ୍ ମର୍ଡ଼ର ସମୟରୁ ଜାଣିବାର ସୁଯୋଗ ପାଇଥିଲି ।

ମୁଁ ସେତେବେଳେ ନୟାଗଡ଼ ବ୍ରଜେନ୍ଦ୍ର ହାଇସ୍କୁଲର ଛାତ୍ର, ସ୍ୱର୍ଗତଃ ମିଶ୍ର ବେଜେଲ୍ ଗେଟ୍ ସାହେବ ମଲାବେଳେ ଆସିଷ୍ଟାଣ୍ଟ ଦିଓ୍ୱାନ ଥିବା ଓ ଆନ୍ଦୋଳନରତ ପ୍ରଜାମାନଙ୍କୁ କିପରି ସାହାଯ୍ୟ କରିହେବ ତଥା ରଣପୁର ରାଜାଙ୍କ ଶାସନର ଦାୟିତ୍ୱ ତୁଲାଇ ହେବ ଏ ସବୁଥିରେ ସେ ମହାଶୟ ତାଙ୍କର ବୁଦ୍ଧିମତ୍ତାର ପରାକାଷ୍ଠା ପ୍ରଦର୍ଶନ କରିଥିବା ଆମ ଛାତ୍ରମାନଙ୍କର ମୁଖ୍ୟ ଚର୍ଚ୍ଚା ଥିଲା । କାରଣ ନୟାଗଡ଼ ମଧ୍ୟ ଗଡ଼ଜାତ ଆନ୍ଦୋଳନର ଏକ ପୃଷ୍ଠଭୂମି ଥିଲା ।

କ୍ରମେ ଭାରତବର୍ଷରୁ ବ୍ରିଟିଶ୍ ଶାସନ ୧୯୪୭ ମସିହା ଅଗଷ୍ଟ ମାସ ୧୫ତମ ତାରିଖ ରାତ୍ର ବାରଘଣ୍ଟା ବେଳୁ ସବୁଦିନ ପାଇଁ ଅପସରି ଗଲା ଓ ତତ୍ ସଙ୍ଗେ ସଙ୍ଗେ ଓଡ଼ିଶାର ଗଡ଼ଜାତମାନଙ୍କରୁ ରାଜଛତ୍ର ଲୋପ ପାଇବାର ସୂତ୍ରପାତ ହେଲା । ପରେ ୧୯୪୯ ମସିହାରେ ଭାରତବର୍ଷର ଲୌହମାନବ ତଥା ଅଦ୍ୱିତୀୟ ନେତା ସ୍ୱର୍ଗୀୟ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଡାକରେ ଗଡ଼ଜାତଗୁଡ଼ିକ ଓଡ଼ିଶାର ଶାସନରେ ସାମିଲ ହେଲା ।

ସ୍ୱର୍ଗତଃ ଚଣ୍ଡେଶ୍ୱର ମିଶ୍ର ରଣପୁର ଛାଡ଼ି ନୟାଗଡ଼ ସହରଅଞ୍ଚଳ ମଧ୍ୟରେ ବସବାସ କରି ତାଙ୍କର ଆଇନ ବ୍ୟବସାୟ ଆରମ୍ଭ କରି ଦେଇଥିଲେ ପ୍ରାୟ ମିଶ୍ରଣର ବହୁ ଆଗରୁ । ସେ ମହାଶୟ ନୟାଗଡ ପ୍ରଜାମଣ୍ଡଳ ଆନ୍ଦୋଳନର ତତ୍କାଳିନ ନେତାମାନଙ୍କ ସହିତ ପୂର୍ବଭଳି ସମ୍ପର୍କ ରଖୁଥିଲେ ଏବଂ ଆନ୍ଦୋଳନ-କାରୀମାନଙ୍କୁ ସୁପରାମର୍ଶ ଦେଉଥିଲେ । ଅବଶ୍ୟ ଏଥିପୂର୍ବରୁ ସ୍ୱର୍ଗୀୟ କୃପାସିନ୍ଧୁ ପଟ୍ଟନାୟକ ମଧ୍ୟ ନୟାଗଡ଼ ଗଡଜାତ ଦରବାରରେ ଆସି ଓକିଲାତି ଆରମ୍ଭ କରିଥିଲେ । ସ୍ୱର୍ଗତଃ ପଟ୍ଟନାୟକଙ୍କ ସହିତ ଶ୍ରୀ ମିଶ୍ରଙ୍କର ଅତି ଘନିଷ୍ଠ ସମ୍ପର୍କ ଥିଲା ଓ ସ୍ୱର୍ଗତଃ ମିଶ୍ର, ପଟ୍ଟନାୟକଙ୍କୁ ସର୍ବଦା ବଡ଼ଭାଇ ବୋଲି ସମ୍ବୋଧନ କରି ଆସୁଥିଲେ । ପ୍ରାୟ ସେଇ ସମୟକୁ ମହାମାନ୍ୟ ହାଇକୋର୍ଟଙ୍କ ଓକିଲ ତଥା ବର୍ତ୍ତମାନ ନୟାଗଡ଼ ବାର୍‌ଆସୋସିଏସନର ସଭାପତି ଆଡ଼ଭୋକେଟ୍ ମାଧବ ଚନ୍ଦ୍ର ଚୌଧୁରୀ ମଧ୍ୟ ନୟାଗଡ଼ ବାର୍‌ରେ ଆସି ସାମିଲ ହୋଇଥିଲେ ଏବଂ ଏହି ତିନିଜଣ ଓକିଲ ବନ୍ଧୁଙ୍କର ମଧ୍ୟରେ ବେଶ୍ ସୌହାର୍ଦ୍ଦ ଏବଂ ଉତ୍ତମ ସମ୍ପର୍କ ରହିଥିଲା । ସ୍ୱର୍ଗୀୟ ଚଣ୍ଡେଶ୍ୱର ମିଶ୍ରଙ୍କର ସ୍ମୃତିଚାରଣ କଲାବେଳେ ନୟାଗଡ଼ରେ ଏହି ମହାଶୟମାନଙ୍କର ନୟାଗଡ଼ ପ୍ରଜାମଣ୍ଡଳ ଆନ୍ଦୋଳନ ତଥା ଆନ୍ଦୋଳନରତ କର୍ମୀମାନଙ୍କୁ ଆଇନଗତ ପରାମର୍ଶ ଓ ସହାନୁଭୂତି ଦେଖାଇବାରେ ଯେଉଁ ଉଲ୍ଲେଖନୀୟ ଭୂମିକା ଥିଲା ନୟାଗଡର ଇତିହାସରେ ସଦା ଲିପିବଦ୍ଧ ହୋଇ ରହିବ । ଏଠାରେ କହିବାର କଥା ସ୍ୱର୍ଗୀୟ ମିଶ୍ର ଏପରିକି ରଣପୁରରେ ସାନ ଦିଓ୍ୱାନ୍ ଥିବା କାଳରୁ ନୟାଗଡ ପ୍ରଜାମଣ୍ଡଳ କର୍ମୀମାନଙ୍କୁ ସଦା ସୁପରାମର୍ଶ ଦେଇ ଆସିଥିଲେ । ତାଙ୍କର ନୟାଗଡ ରହଣି ସ୍ଥାନୀୟ ଆନ୍ଦୋଳନକାରୀଙ୍କୁ ବିଶେଷ ସାହାଯ୍ୟ କରି ପାରିଥିଲା ।

ଗଡ଼ଜାତ ମିଶ୍ରଣ ପରେ ସ୍ୱର୍ଗତଃ ମିଶ୍ର ନୟାଗଡ଼ ବାର୍‌ଆସୋସିଏସନ୍‌ର Public Prosecutor ହେବାର ମଧ୍ୟ ସୁଯୋଗ ପାଇଲେ । ଆମେ ନୟାଗଡ଼ବାସୀ ସେ ମହାଶୟଙ୍କୁ ଅଧିକରୁ ଅଧିକ ଜାଣିବାର ସୁବିଧା ପାଇଲୁ ।

ମୁଁ ସେ ମହାଶୟଙ୍କଠାରୁ ବୟସରେ ବହୁତ କମ୍ ହେଲେ ମଧ୍ୟ ମୋ ଜୀବନର ବହୁ ଘଟଣାବଳୀରେ ତାଙ୍କର ଛାୟାପାତ ହୋଇଥିଲା । ତେଣୁ ମୁଁ ଆସ୍ତେ ତାଙ୍କର ଅତି ନିକଟତର ହୋଇ ପାରିଥିଲି । ସେଥିପାଇଁ ଆଜି ତାଙ୍କର ଦେହାବସାନର ବହୁବର୍ଷ ପରେ ମଧ୍ୟ ମୁଁ କିଛି ଲେଖିବାର ସୌଭାଗ୍ୟ ପାଇଛି ।

ସ୍ୱର୍ଗତଃ ମିଶ୍ର କେବଳ ନୟାଗଡ଼ରେ ରହି ଟଙ୍କା ରୋଜଗାର କରିବାକୁ ଆସି ନ ଥିଲେ । ତାଙ୍କ ନୟାଗଡ଼ ରହଣିକାଳ କେବଳ ଆଇନ୍ ବ୍ୟବସାୟ

ଚଳାଇବା ପାଇଁ ନଥିଲା । ସେ ଥିଲେ ଏଠିକାର ରାଜନୈତିକ ତଥା ସାମାଜିକ ପରିସ୍ଥିତିରେ ବଳିଷ୍ଠ ଦିଗ୍‌ଦର୍ଶନ ଦେବାରେ ଜଣେ ଅଗ୍ରଣୀ ବନ୍ଧୁ । ଓଡ଼ିଶାର ଐତିହାସିକ ଷଢ଼େଇକଳା ଖରସୁଆଁ ସୀମା ବିବାଦ ନେଇ ନୟାଗଡ଼ରେ ଯେଉଁ ଆନ୍ଦୋଳନ ସୃଷ୍ଟି ହୋଇଥିଲା ସେତେବେଳକୁ ସ୍ୱର୍ଗତଃ ମିଶ୍ର ଥାଆନ୍ତି ନୟାଗଡ଼ ବାର୍‌ଆସୋସିଏସନର ଜଣେ ବରିଷ୍ଠ ସଭ୍ୟ । ଏଠି ମୁଖ୍ୟତଃ ଏହି ଆନ୍ଦୋଳନକୁ ସ୍ଥାନୀୟ ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ନେତା ତଥା ବର୍ତ୍ତମାନର ପାର୍ଲାମେଣ୍ଟ ସଦସ୍ୟ ଶ୍ରୀ ଶିବାଜୀ ପଟ୍ଟନାୟକ ନେତୃତ୍ୱ ନେଇଥିଲେ । ମୁଁ ତାଙ୍କୁ ସାହାଯ୍ୟ କରୁଥାଏ । ଆମେ ଦୁହେଁ ସ୍ଥାନୀୟ ଓକିଲବନ୍ଧୁମାନଙ୍କର ପ୍ରଥମେ ବୈଠକ ଡକାଇ ଷଢ଼େଇକଳା ଖରସୁଆଁ ରାଜ୍ୟମାନଙ୍କରେ ଓଡ଼ିଶାର ଦାବୀ ନେଇ ସ୍ଥାନୀୟ କ୍ଷେତ୍ରରେ ଆନ୍ଦୋଳନ ସୃଷ୍ଟି କରିବାକୁ ଅନୁରୋଧ କରିଥିଲୁ । ଆନ୍ଦୋଳନ ପ୍ରାୟ ବହୁଦିନ ଧରି ଏଠି ଚାଲିଥିଲା । ସ୍ୱର୍ଗତଃ ଚଣ୍ଡେଶ୍ୱର ମିଶ୍ର ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ପ୍ରାୟ ପ୍ରତିଦିନ ହରତାଳ ସାଙ୍ଗକୁ କୋର୍ଟ କଚେରୀ ବନ୍ଦ ଭଳି କାମ ହାତକୁ ନେଇ ଶୃଙ୍ଖଳାର ସହ ବିଭିନ୍ନ ଗାଁ ଗଣ୍ଡାର ଛାତ୍ରଛାତ୍ରୀମାନେ ଆସି ମଧ୍ୟ ଆନ୍ଦୋଳନରେ ଭାଗ ନେଇ ଥାଆନ୍ତି । ସ୍ଥାନୀୟ ବୁଦ୍ଧିଜୀବୀ କର୍ମଚାରୀ ତଥା ଛାତ୍ରଛାତ୍ରୀ ଏହି ଆନ୍ଦୋଳନକୁ ୨ ସପ୍ତାହ ବ୍ୟାପୀ ଚଳାଇଥିଲେ ଓ ଶେଷରେ ୨୬ ଜାନୁୟାରୀ ଐତିହାସିକ ଦିବସଟିକୁ କଳାଦିବସ ଘୋଷଣା କରି କଳା ପତାକା ଧରି ସହର ପରିକ୍ରମା କରିଥିଲେ । ଏଥିରେ ସ୍ୱର୍ଗତଃ ମିଶ୍ର ଧାଡ଼ିର ଆଗରେ ଚାଲିଥିଲେ ତାଙ୍କର ବୟୋଜ୍ୟେଷ୍ଠ ଓକିଲ-ବନ୍ଧୁ କୃପାସିନ୍ଧୁ ବାବୁଙ୍କ ସହିତ । ଏହା ବେଶ୍ ଉପଭୋଗ୍ୟ ତଥା ଚିତ୍ତାକର୍ଷକ ହୋଇଥିଲା । ଅପରାହ୍ନରେ ଏକ ବର୍ଣ୍ଣାଢ଼୍ୟ ସାଧାରଣ ସଭାରେ ସ୍ୱର୍ଗତଃ ମିଶ୍ର ସଭାପତିତ୍ୱ କରିଥିଲେ । ଶ୍ରୀ ମିଶ୍ରଙ୍କର ଗାନ୍ଧିବାଦୀ ଚିନ୍ତାଧାରା ସମ୍ପୂର୍ଣ୍ଣ ଥିଲେ ମଧ୍ୟ ସେ ସଦାବେଳେ ସ୍ପଷ୍ଟବାଦୀ ଓ ନିର୍ଭୀକ ଥିଲେ । ନ୍ୟାୟ ଏବଂ ନିର-ପେକ୍ଷତାକୁ ଆଦର ଏବଂ ସମ୍ମାନ ଦେଖାଉଥିଲେ ।

ସେହିଭଳି ନୟାଗଡ଼ରେ କଲେଜ ନିର୍ମାଣ ବେଳେ ସ୍ୱର୍ଗୀୟ ମିଶ୍ର ତାର ପ୍ରଥମେ ସଭାପତି ଥିଲେ । ପରିଚାଳନା କ୍ଷେତ୍ରରେ ପରିଚାଳନାଗତ ତ୍ରୁଟିକୁ ସେ ପସନ୍ଦ କରୁ ନଥିଲେ । ତାଙ୍କର ନିର୍ଭୀକପଣିଆକୁ ଲୋକେ ସର୍ବଦା ପସନ୍ଦ କରୁଥିଲେ । ତାଙ୍କର ସାମାଜିକ ଜୀବନଯାପନ ପ୍ରଣାଳୀ ମଧ୍ୟ ଅତି ଉଚ୍ଚକୋଟୀର ଥିଲା । ଏକଦା ସ୍ୱର୍ଗତଃ ମିଶ୍ରଙ୍କର ବଡ଼ଝିଅ ବାହାଘର ହେଉଥାଏ । ଆମେମାନେ ଏପରି ବାହାଘରେ ସାଧାରଣତଃ ଗୋଟିଏ ଭୋଜି କରି ବନ୍ଧୁ ବାନ୍ଧବଙ୍କୁ ଲୋଡ଼ିଥାଉ । ମାତ୍ର ସ୍ୱର୍ଗତଃ ମିଶ୍ର ତାଙ୍କର ଝିଅ ବାହାଘରକୁ ୩ଟି ଭୋଜିର

ବ୍ୟବସ୍ଥା କରି ପୃଥକ ପୃଥକ ଭବେ ତିନି ଘଡିରେ ଶେଷ କରିଥିଲେ । ଏହା କାହିଁକି କରଇଲେ ପଗ୍‌ରିବାରେ ସ୍ୱର୍ଗତଃ ମିଶ୍ର କହିଥିଲେ ଏହା ସାମାନ୍ୟ ବ୍ୟୟସାପେକ୍ଷ ହେଲେ ମଧ୍ୟ ଅତି ଶୃଙ୍ଖଳିତ ଏବଂ ସମସ୍ତ ବନ୍ଧୁ ବାନ୍ଧବଙ୍କୁ ଆପ୍ୟାୟିତ କରିବାରେ ତ୍ରୁଟିହୀନ ହୋଇଥାଏ । କାରଣ ମୋର ବନ୍ଧୁ ଏବଂ ମୋ ପିଲମାନଙ୍କର ବନ୍ଧୁ ତଥା ବାହାଘରକୁ ଆସୁଥିବା ବରଯାତ୍ରୀ ଏ ସମସ୍ତଙ୍କୁ ଏକସଙ୍ଗେ ଆପ୍ୟାୟିତ କଲବେଳେ ବହୁ ତ୍ରୁଟି ପରିଲକ୍ଷିତ ହୁଏ । ତେଣୁ ତାର ପୁନରାବୃତ୍ତି କରିବାକୁ ସେ ଗ୍ହିଁ ନ ଥିଲେ । ଏହା ସ୍ପଷ୍ଟ ଯେ ସ୍ୱର୍ଗତଃ ମିଶ୍ର ସଠିକ କାର୍ଯ୍ୟ ସମ୍ପାଦନରେ ସଦାସର୍ବଦା ଚେଷ୍ଟା କରନ୍ତି ।

ଥରେ ମୁଁ ତାଙ୍କ ସାଇଆଡ଼େ ଗଲବେଳେ ସ୍ୱର୍ଗତଃ ମିଶ୍ର ତାଙ୍କ ଦାଣ୍ଡ ବାରଣ୍ଡାରେ ବସିଥିବାର ଦେଖିଲି । ତେଣୁ ମୁଁ ତାଙ୍କ ପାଖକୁ ଗଲି, କଥା ଛଳରେ ପଗ୍‌ରିଲି ଆପଣଙ୍କ ଦ୍ୱାର ସାମନାରେ ମାଟି ଡ୍ରେନ କଟା ଯାଉଅଛି । ଆପଣଙ୍କ ଗାଡ଼ି ଘରକୁ ଆସିବାରେ ଅସୁବିଧା ହେବ । କିନ୍ତୁ ସ୍ୱର୍ଗତଃ ମିଶ୍ରଙ୍କର ଏ ବାବଦରେ ଯେଉଁ ଉତ୍ତର ତାହା କ୍ୱଚିତ୍ ଲେକଙ୍କ ପାଖରୁ ମିଳେ । ସେ ମହାଶୟ କହିଥିଲେ, "ଏନ୍. ଏ. ସି. ଅର୍ଥାଭବରୁ ପକା ଡ୍ରେନ୍ କରିପାରୁ ନାହିଁ । ମୋ ନିଜର ଜାଗା ମଧ୍ୟ ଆଗକୁ ନାହିଁ । ତେଣୁ ମାଟି ଡ୍ରେନ୍ କଟା ପରେ ପରେ ମୁଁ ଏନ୍. ଏ. ସି.ର ଅନୁମତି ଆଣି ଗୋଟିଏ ପକ୍‌କା ପୋଲ କରିବା ପାଇଁ ଭବୁଚି ।" ଏଥିରୁ ମୁଁ ଜାଣିଲି ସରକାରୀ ଜାଗା ଜବର ଦଖଲ କରି ନିଜର କରିବା ସେ ଇଚ୍ଛା କରନ୍ତି ନାହିଁ । ଯଦିଓ ମୁଁ କହିଲି "ସରକାରୀ ଜମି ଦଖଲ ଏବେ ବହୁ ବିଜ୍ଞ ବ୍ୟକ୍ତିଙ୍କର କାମ ; କାରଣ ଏନ୍. ଏ. ସି ର କର୍ମଗ୍ୱରୀ ଏ ପ୍ରକାର ଅଭିଯୋଗ ଆଣି କର୍ତ୍ତୃପକ୍ଷଙ୍କୁ ଜଣାଇବା ଏକ ନିତ୍ୟ ନୈମିତ୍ତ କାର୍ଯ୍ୟରେ ପରିଣତ ହୋଇଗଲଣି । ଆପଣଙ୍କ ଭଳି ଯଦି ସମସ୍ତେ ଚିନ୍ତା କରନ୍ତେ ଏକ ସୁସ୍ଥ ସମାଜ ଗଠନରେ ଏହା ବହୁତ ସାହାଯ୍ୟ କରନ୍ତା ।" ଏହିପରି ବହୁ ଉପାଦେୟ କଥା ତାଙ୍କଠାରୁ ଦେଖିବାକୁ ଓ ଶୁଣିବାକୁ ମିଳେ ।

ମୁଁ ସ୍ୱର୍ଗତଃ ମିଶ୍ରଙ୍କ ସହିତ ବହୁ ପାରିବାରିକ ତଥା ଯୁକ୍ତିଯୁକ୍ତ କଥାବାର୍ତ୍ତା ହେବାର ସୁଯୋଗ ପାଇଥିଲି । ମୋଟାମୋଟି ତାଙ୍କ ନୟାଗଡ଼ ରହଣିକାଳ ସ୍ୱର୍ଗତଃ ମିଶ୍ରଙ୍କର ଜୀବନୀର ଏକ ବଳିଷ୍ଠ ଅଂଶ ବୋଲି ଧରି ନେବାକୁ ହେବ । ସେ ଏବଂ ତାଙ୍କ ଚିନ୍ତାଧାର ପାଇଁ ନୟାଗଡ଼ ଥିଲ ତାଙ୍କର ଏକ ଉଲ୍ଲେଖନୀୟ ସମୟ । ତାଙ୍କ ପିଲମାନେ ପାଠ ପଢ଼ିବା, ବଡ଼ ହେବା ତଥା ଅନ୍ୟାନ୍ୟ ଘଟଣାବଳୀ ତାଙ୍କର ଏହିଠାରେ ହିଁ ଘଟିଯାଇଥିଲ ।

ଦିନକର କଥା, ଏମିତି ଥରେ ତାଙ୍କ ବୈଠକ ଘରେ ବସି କଥାବାର୍ତ୍ତା ହେବା ବେଳେ ସ୍ୱର୍ଗତଃ ମିଶ୍ର ତାଙ୍କର ମନର ଏକ କଥା କହି ପକାଇଥିଲେ । ତାହା ଥିଲା ସେ ଯେପରି ଜଣେ ଖ୍ୟାତିସମ୍ପନ୍ନ ଓକିଲ ଥିଲେ, ଓକିଲତି ବ୍ୟବସାୟରେ ନାଁ କମାଇ ଥିଲେ ସେ ଭାବୁଥିଲେ ସେହିଭଳି ତାଙ୍କ ବଂଶର କେହି ଜଣେ ନୟାଗଡ଼ରେ ରହି ଓକିଲତି କରନ୍ତା । ସୁନାମ ଅର୍ଜନ କରନ୍ତା, ତାଙ୍କର ନାଁ ରଖନ୍ତା । ଏହା ସେ ବିଶେଷ ଅନୁଭବ କରିଥିଲେ ତାଙ୍କ ପୁତୁରା ଶ୍ରୀ.................. ନୟାଗଡ଼ରୁ ଓକିଲତି ଛାଡ଼ି ରଣପୁର ବାର୍‌ରେ ଜଏନ୍ କଲାପରେ । ତାହା ସାଙ୍ଗକୁ ସ୍ୱର୍ଗତଃ ମିଶ୍ରଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀ ଉମାଶଙ୍କର ମିଶ୍ର ଓଡ଼ିଶା ସରକାରଙ୍କ ଅଧୀନରେ ଯଦିଓ ସେତେବେଳକୁ ଡେପୁଟି ହେବାର ଯୋଗ୍ୟତା ହାସଲ କରି ସାରିଥିଲେ ତଥାପି ସେଦିନର ସ୍ୱର୍ଗତଃ ମିଶ୍ରଙ୍କର କଥାରୁ ଜଣା ପଡ଼ୁଥିଲା ସତେ ଯେପରି ଶ୍ରୀ ମିଶ୍ର ସେଥିରେ ସେତେଟା ଖୁସି ନଥିଲେ । ମନେ ହେଉଥିଲା ପୁଅ ଓକିଲତି କରି ସଚ୍ଚୋଟ ଆଇନ୍ ବିଶାରଦ ହୋଇ ଥାଆନ୍ତା ଓ ନାଁ କମାଇ ବାପାଙ୍କର ନାଁ ରଖି ଥାଆନ୍ତା ସ୍ୱାଧୀନ ଭାବରେ । ଦୁଃଖ ରହିଗଲା ସ୍ୱର୍ଗତ ମିଶ୍ରଙ୍କର ଶେଷ ଇଚ୍ଛା ସେ ନିଜେ ଅନୁଭବ କରିପାରିଲେନି । ତାଙ୍କର ସାନପୁଅ ଶ୍ରୀ ଦୁର୍ଗାମାଧବ ମିଶ୍ର ଓକିଲତି କଲେ । ମହାମାନ୍ୟ ଓଡ଼ିଶା ହାଇକୋର୍ଟଙ୍କ ଇଜଲାସରେ କଟକରେ ରହିଲେ କିନ୍ତୁ ସ୍ୱର୍ଗତଃ ଚଣ୍ଡୀବାବୁ ଏହା ନିଜେ ଜାଣିବାର ଅବକାଶ ପାଇ ପାରିଲେନି । ଏହିପରି କେତେ କଥା, କେତେ ଆଶା ସଂସାରରେ ବହୁ ଲୋକଙ୍କର ବାକିଆ ରହିଯାଏ ସେ ନିଜେ ସେ ସୁଖଟା ଅନୁଭବ କରିପାରେନା । ସ୍ୱର୍ଗତଃ ଚଣ୍ଡେଶ୍ୱର ମିଶ୍ରଙ୍କର ଏହି ଅବଶୋଷ ମଧ୍ୟ ରହିଗଲା ସବୁଦିନ ପାଇଁ ।

ଶ୍ରୀ ରଘୁନାଥ ଦାସ
ନୟାଗଡ଼



# ଚଣ୍ଡିବାବୁ—ଏକ ମହାନ ବ୍ୟକ୍ତି

ଶ୍ରୀ ଅକ୍ରୂର ମହାପାତ୍ର
ବରିଷ୍ଠ ଆଡ଼ଭୋକେଟ

ଚଣ୍ଡେଶ୍ୱର ମିଶ୍ର ରଣପୁର ରାମଚନ୍ଦ୍ରପୁର ଶାସନର ଏକ ସଂଭ୍ରାନ୍ତ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରି ରେଭେନ୍‌ସା କଲେଜ଼ରେ ଉଚ୍ଚଶିକ୍ଷା ଲାଭ କରି ବି.ଏ.ବି.ଏଲ୍ ଡ଼ିଗ୍ରୀ ହାସଲ କରିଥିଲେ ଯେତେବେଳେ ଗ୍ରାଜୁଏଟ୍‌ମାନେ ଓଡ଼ିଶାରେ ହାତ ଆଙ୍ଗୁଠିରେ ଗଣାଯାଉଥିଲେ । ଶିକ୍ଷା ଲାଭ ପରେ ସେ ରଣପୁରର ଆସିଷ୍ଟାଣ୍ଟ୍ ଦେଓ୍ୱାନ ଭାବେ କାର୍ଯ୍ୟ କରୁଥିଲେ ଏବଂ ସେହି ସମୟରେ ଗଡ଼ଜାତ ମାନଙ୍କରେ ପ୍ରଜା ଆନ୍ଦୋଳନ ମୁଣ୍ଡ ଟେକିଥିଲା । ୧୯୩୮ ମସିହାରେ ଚଣ୍ଡେଶ୍ୱରବାବୁ ରଣପୁରର ଦେଓ୍ୱାନ କାର୍ଯ୍ୟ ଚଳାଉଥିବା ସମୟରେ ଗଡ଼ଜାତ ସମୁହର ପଲିଟିକାଲ୍ ଏଜେଣ୍ଟ ବେଜେଲଗେଟ୍ ସାହେବଙ୍କୁ ଲୋକମାନେ ରଣପୁର ଗଡ଼ ଠାରେ ହତ୍ୟା କରିଥିଲେ । ଏହି ହତ୍ୟାପରେ ନିରୀହ ଲୋକମାନଙ୍କ ଉପରେ ଏପରି ଅକଥନୀୟ ଅତ୍ୟାଚାର କରାଗଲା ଯେ ସେଥିରେ ଚଣ୍ଡେଶ୍ୱର ବାବୁ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଲେ ଓ ତାଙ୍କର ବିବେକ ଦଂଶନ ଘଟିଲା । ସେ ପିଲାଟି ଦିନରୁ ସ୍ୱାଧୀନଚେତା ଥିଲେ, ତେଣୁ ସାଙ୍ଗେ ସାଙ୍ଗେ ଦେଓ୍ୱାନ କାର୍ଯ୍ୟ ପରିତ୍ୟାଗ କଲେ ଓ ସ୍ୱାଧୀନ ଭାବେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ରଣପୁରରେ ଓକିଲାତି କରୁଥିବା ସମୟରେ ଗଡ଼ଜାତ ମିଶ୍ରଣ ହେଲା । ତାପରେ ସେ ନୟାଗଡ଼ ସବ୍‌ଡ଼ିଭିଜନର ପବ୍ଲିକ୍ ପ୍ରସିକ୍ୟୁଟର ଓ ଗଭର୍ଣ୍ଣମେଣ୍ଟ ଓକିଲ ଭାବେ ନିଯୁକ୍ତିପାଇ ନୟାଗଡ଼ରେ ଓକିଲାତି ଆରମ୍ଭ କଲେ । ୧୯୪୮ ମସିହାରେ ମୁଁ 'ଲ' ପରୀକ୍ଷା ଦେଇ ଆସିବା ପରେ ଚଣ୍ଡେଶ୍ୱର ବାବୁଙ୍କ ସହ ପରିଚୟ ହେଲା । ସେହିଦିନ-ଠାରୁ ତାଙ୍କୁ ଖଦଡ଼ ପୋଷାକ ବ୍ୟତୀତ ଅନ୍ୟ କିଛି ବ୍ୟବହାର କରିବାର ମୁଁ

ଦେଖିନାହିଁ । ନୟାଗଡ଼ ସବ୍‌ଡ଼ିଭିଜନର ଉନ୍ନତି ପାଇଁ ତାଙ୍କର ହୃଦୟ ସବୁବେଳେ ବ୍ୟାକୁଳ ହୋଇ ଉଠୁଥିଲା । ନୟାଗଡ଼ ସବ୍‌ଡ଼ିଭିଜନ, ବୋଲଗଡ଼, ବାଙ୍କି, ବୁଗୁଡ଼ା ଥାନାମାନ ଓ ନରସିଂହପୁର ଏବଂ ବଡ଼ମ୍ବାକୁ ନେଇ ଏକ ମହାନଦୀ ଜିଲ୍ଲା କରିବା ଓ ନୟାଗଡ଼ରେ ଏକ କଲେଜ ସ୍ଥାପନା କରିବା ଥିଲା ଚଣ୍ଡେଶ୍ୱର ବାବୁଙ୍କର ପରିକଳ୍ପନା । ସେଥିପାଇଁ ସେ ଏକ ଜିଲ୍ଲାଗଠନ କମିଟି ଓ କଲେଜ ଗଠନ କମିଟି ଗଢ଼ିଥିଲେ । ଉକ୍ତ କମିଟିମାନଙ୍କର ସେ ଥିଲେ ସଭାପତି ଓ ମୁଁ ସଂପାଦକ ଥିଲି । ଚଣ୍ଡେଶ୍ୱର ବାବୁଙ୍କ ଆପ୍ରାଣ ଚେଷ୍ଟା ଫଳରେ ସ୍ୱର୍ଗତଃ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲାବେଳେ ନୟାଗଡ଼କୁ ଏକ ଜିଲ୍ଲା କରଯିବାର ପ୍ରତିଶ୍ରୁତି ଦେଇଥିଲେ । ଗରିବ ନିଃସ୍ୱହ ଲୋକମାନେ ଜିଲ୍ଲା ହେଡ଼କ୍ୱାଟର ପୁରୀ ଯାଇ ବହୁ କ୍ଷତି ଖର୍ଚ୍ଚାନ୍ତ ନ ହେବାକୁ ତାଙ୍କର ହୃଦୟ ବ୍ୟଥିତ ହେଉଥିଲା । ୧୯୪୯ ମସିହାରେ ମୁଁ ଓକିଲାତି ବ୍ୟବସାୟ କରିବାକୁ ଆସିବାରେ ଚଣ୍ଡେଶ୍ୱର ବାବୁଙ୍କ ସଂସ୍ପର୍ଶରେ ବରାବର ଆସିବାକୁ ପଡ଼ିଲା । ଚଣ୍ଡେଶ୍ୱର ବାବୁ ସବୁରି ମୁହଁରେ ଚଣ୍ଡିବାବୁ ବୋଲି ପରିଚିତ । ଓକିଲ ହିସାବରେ ଚଣ୍ଡିବାବୁ ଯେ ଜଣେ ଅତି ଉଚ୍ଚକୋଟୀର ଓକିଲ କହିବା ବାହୁଲ୍ୟ । ସେ ଅତି ବୁଦ୍ଧିମାନ, ବିଚକ୍ଷଣ ଓ ଅଭିଜ୍ଞ ଓକିଲ ଥିଲେ । ପ୍ରତ୍ୟେକ ଆଇନ ସଂପର୍କରେ ତାଙ୍କର ସମ୍ୟକ ଓ ନିର୍ଭୁଲ ଧାରଣା ଥିଲା । ଓକିଲାତି ଜୀବନରେ ମୁଁ ତାଙ୍କର ଜୁନିଅର ଓକିଲ ନଥିଲେ ହେଁ ଆରମ୍ଭରୁ ସୌଭାଗ୍ୟକ୍ରମେ ଅଧିକାଂଶ ମକଦ୍ଦମାରେ ତାଙ୍କର ବିପକ୍ଷ ଓକିଲ ଭାବେ ରହି ଆସିଥିଲି ଏବଂ ସେଥିରେ ମୁଁ ବିଶେଷ ଲାଭବାନ ହୋଇଅଛି । କାରଣ ଜଣେ ଯଦି ଚଣ୍ଡିବାବୁଙ୍କ ଜମାନବନ୍ଦୀ, ଜେରା ଓ ବିଶେଷରେ ଆର୍ଗୁମେଣ୍ଟ ବିଶେଷ ଭାବରେ ଅନୁଧ୍ୟାନ ନକରିବ ଓ ତଦନୁଯାୟୀ ପ୍ରସ୍ତୁତ ନ ହେବ ତାହାହେଲେ ସେ ନିଶ୍ଚିତ ଭାବେ ଖଣାକୁ ଠେଲିଦେବେ । ତେଣୁ ମୁଁ କହିବାକୁ ଆଦୌ ଦ୍ୱିଧା ଅନୁଭବ କରିବିନି ଯେ ମୁଁ ଚଣ୍ଡିବାବୁଙ୍କର ଏକଲବ୍ୟ । ଚଣ୍ଡୀବାବୁଙ୍କର ବିଶେଷ ଗୁଣ ହେଲା, ସେ ସ୍ପଷ୍ଟବାଦୀ, ନିର୍ଭୀକ ଓ ସ୍ୱାଧୀନଚେତା । ଏତଦ୍‌ବ୍ୟତୀତ ତାଙ୍କର କଥାର ଚତୁରୀ, ଶୈଳୀ ଓ ଥଟ୍ଟା ପରିହାସ ଉନ୍ନତ ଧରଣର । କଥାରେ ସରସତା ଓ ରସିକତା ଭରି ରହିଥିଲା । ସେ ଅତି ସ୍ନେହୀ ଲୋକଥିଲେ ଯଦିଓ ତାଙ୍କୁ ଦେଖିଲେ କେହି ଜାଣିପାରିବେନି ଯେ ସେ ସ୍ନେହଶୀଳ । ବୟସରେ ମୋଠାରୁ ଯଥେଷ୍ଟ ବଡ଼ ଥିଲେ ମଧ୍ୟ ମୋ ଘରକୁ ବୁଲି ଆସିବାକୁ ତାଙ୍କ ମନରେ ଆଦୌ ଅହଙ୍କାର ନଥିଲା । ତାଙ୍କର ନିକଟ ସଂପର୍କରେ ନ ଆସିଲେ ପ୍ରକୃତରେ ସେ କଣ ଥିଲେ କେହି ଜାଣି ପାରିବେନି । ତାଙ୍କରି ପ୍ରଚେଷ୍ଟାରେ ସ୍ୱର୍ଗୀୟ ଶ୍ରୀଯୁକ୍ତ ଭ୍ରମରବର ଜେନା ନୟାଗଡ଼ର ଏସ୍. ଡ଼ି. ଓ. ଥିବା ସମୟରେ ୧୯୬୧

ମସିହାରେ ନୟାଗଡ଼ କଲେଜ ସ୍ଥାପିତ ହୋଇଥିଲା ଓ ସେ କଲେଜ ପରିଚାଳନା କମିଟିର ଉପସଭପତି ଥିଲେ । ତାଙ୍କରି ଚେଷ୍ଟା ଫଳରେ ସନ ୧୯୫୬ ମସିହାରେ ନୟାଗଡ଼ କେନ୍ଦ୍ର ସମବାୟ ବ୍ୟାଙ୍କ୍ ଖୋର୍ଦ୍ଧା ସମବାୟ ବ୍ୟାଙ୍କ୍ ସହିତ ମିଶ୍ରଣ ହୋଇ ନପାରି ତାର ସ୍ୱାତନ୍ତ୍ର୍ୟ ବଜାୟ ରଖିଥିଲା । ନୟାଗଡ଼ର ସମୂହ ଉନ୍ନତି ନିମନ୍ତେ ଚଣ୍ଡିବାବୁଙ୍କର ଅବଦାନ ଯଥେଷ୍ଟ । ସେ ଜୀବିତ ଥିଲେ ବହୁପୂର୍ବରୁ ହୁଏତ ନୟାଗଡ଼ ଏକ ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ ହୋଇଥାନ୍ତା । କାଳ ରହିଲାନି, ଚଣ୍ଡିବାବୁ ଚାଲିଗଲେ, ନୟାଗଡ଼ ବାର୍‌ରେ ତାଙ୍କର ସ୍ଥାନ ଅପୂରଣୀୟ ହୋଇ ରହିଗଲା । ସେ ଥିଲେ ମଣିଷ ପରି ମଣିଷଟିଏ, ଏକ ଅଭୁଲା ସ୍ମୃତି ।

ଶ୍ରୀ ଅକ୍ରୂର ମହାପାତ୍ର
ଏମ୍. ଏ. ବି. ଏଲ୍
ଆଡ୍‌ଭୋକେଟ
ନୟାଗଡ



# ଗୁରୁ ସ୍ମରଣେ

ଡାକ୍ତର ଯୋଗେଶ ଚନ୍ଦ୍ର ରାଉତ
(ପୂର୍ବତନ ମନ୍ତ୍ରୀ)

ମୁଁ ୧୯୩୫ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ବାଙ୍କି-ଡମପଡ଼ା ହାଇସ୍କୁଲ ଅର୍ଥାତ୍ ପରବର୍ତ୍ତୀ ସମୟରେ ନାମିତ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠର ଛାତ୍ର ଥିଲି । ସେହି ସମୟରେ ବ୍ରିଟିଶ ରାଜତ୍ୱ ଥିବାରୁ ଇଂରାଜୀ ଭାଷାର ପ୍ରାଧାନ୍ୟ ଥିଲା । ଏଣୁ ମାତୃଭାଷା ଓଡ଼ିଆ ବିଷୟକୁ ଛାଡ଼ିଦେଲେ ଅନ୍ୟ ସମସ୍ତ ବିଷୟର ପାଠ୍ୟକ୍ରମ ଇଂରାଜୀରେ ଲେଖା ହୋଇଥିଲା । ବିଦେଶୀ ଇଂରାଜୀ ଭାଷା ଅଧ୍ୟୟନ କରିବା କଷ୍ଟସାଧ୍ୟ ହୋଇଥିଲେ ସୁଦ୍ଧା ଛାତ୍ରମାନେ ପାଠ୍ୟପୁସ୍ତକମାନ ଇଂରାଜୀରେ ପଢ଼ିବାକୁ ବାଧ୍ୟ ହେଉଥିଲେ ଏବଂ ପରୀକ୍ଷାରେ ଉତ୍ତର ଇଂରାଜୀରେ ମଧ୍ୟ ଲେଖୁଥିଲେ । ସେତେବେଳେ ପରୀକ୍ଷାରେ କପି ନଥିଲା କିମ୍ବା ଶିକ୍ଷକମାନେ ଘରେଇ ଶିକ୍ଷାଦାନ କରୁନଥିଲେ । ଏଣୁ ପ୍ରବୀଣ ଶିକ୍ଷକମାନେ ଉତ୍ତମ ଭାବରେ ଶ୍ରେଣୀରେ ଛାତ୍ରମାନଙ୍କୁ ପଢ଼ାଉଥିଲେ ଏବଂ ଇଂରାଜୀରେ ବିଶେଷ ଜ୍ଞାନ ତଥା ପାରଦର୍ଶିତା ଥିବା ଶିକ୍ଷକମାନଙ୍କ ଆବଶ୍ୟକତା ବିଶେଷ ଭାବରେ ଅନୁଭୂତ ହେଉଥିଲା । ଗୁରୁ ଚଣ୍ଡେଶ୍ୱର ବାବୁଙ୍କ ଇଂରାଜୀ ଶିକ୍ଷାଦାନ ଏବେ ବି ଭୁଲି ହୋଇ ନାହିଁ । ତାଙ୍କର ଇଂରାଜୀ କହିବାର ପ୍ରାଞ୍ଜଳତା ତଥା ତତ୍ତ୍ୱଭିତ୍ତିକ ବିଷୟ ସରଳ ଓ ବୋଧଗମ୍ୟ ଉପସ୍ଥାପନ ଆମକୁ ମନ୍ତ୍ରମୁଗ୍ଧ କରୁଥିଲା । ସେ ଏପରି ଓଜସ୍ୱିନ ଭାଷାରେ କ୍ଲାସରେ ଇଂରାଜୀରେ ଭାଷଣ ଦେଉଥିଲେ ଯେ ଛାତ୍ରମାନେ ସୁଧାପାନ ପରି ପିଇ ଯାଉଥିଲେ । ତାଙ୍କର ନୈତିକତା, ସ୍ପଷ୍ଟବାଦିତା ମୋର ଚରିତ୍ରରେ ଗଭୀର ରେଖାପାତ କରିଥିଲା ।

ତାଙ୍କ ପରି ପ୍ରବୀଣ ତଥା ଛାତ୍ରବତ୍ସଳ ଶିକ୍ଷକ ବର୍ତ୍ତମାନ ବିରଳ । ବାଙ୍କିରେ ତାଙ୍କର ସ୍ୱଳ୍ପକାଳ ରହଣୀ ଭିତରେ ସେ ବେଶ୍ ସୁନାମ ଅର୍ଜନ

କରିଥିଲେ । ରଣପୁର ରଜା ତାଙ୍କର ଦକ୍ଷତାରେ ପ୍ରୀତ ହୋଇ ତାଙ୍କୁ ସହକାରୀ ଦେଓ୍ୱାନ ପଦରେ ନିଯୁକ୍ତି ଦେବାରେ ସେ ବାଙ୍କି ହାଇସ୍କୁଲର ଶିକ୍ଷକ ପଦରୁ ଇସ୍ତଫା ଦେଇଥିଲେ । ଦେଶ ସ୍ୱାଧୀନ ହେବାରେ ରଣପୁର ଗଡ଼ଜାତ ଓଡ଼ିଶାରେ ମିଶ୍ରଣ ହୋଇଥିଲା ଏବଂ ନୟାଗଡ଼ ସବ୍‌ଡିଭିଜନରେ ଅନ୍ତର୍ଭୁକ୍ତ ହୋଇଥିଲା । ରଣପୁର ଗଡ଼ର ଦେଓ୍ୟାନ ପଦ ଲୋପ ପାଇବାରେ ସେ ସରକାରୀ ଚାକିରି ନ କରି ନୟାଗଡ଼ କୋର୍ଟରେ ଓକିଲାତି କରିଥିଲେ । ଶିକ୍ଷକ, ପ୍ରଶାସକ, ଓକିଲ ପରି ବିଭିନ୍ନ ପେଶାରେ ସେ ନିଯୁକ୍ତ ହୋଇଥିଲେ ସୁଦ୍ଧା ତାଙ୍କର ଦକ୍ଷତା ସବୁ କ୍ଷେତ୍ରରେ ପ୍ରମାଣିତ ହୋଇଥିଲା । ଗୁରୁଙ୍କୁ ମୁଁ ବା କେଉଁ ଦକ୍ଷିଣା ଦେଇ ପାରିବି । ଭଗବାନଙ୍କ ଠାରେ ମୋର ଏତିକି ମାତ୍ର ପ୍ରାର୍ଥନା ଯେ ତାଙ୍କର ଅମରଆତ୍ମା ନିରାମୟ ତଥା ସୁଖମୟ ହେଉ ଏବଂ ମୋର ଭକ୍ତି ଅକ୍ଷୁର୍ଣ୍ଣ ରହୁ ।

ଯୋଗେଶ ଚନ୍ଦ୍ର ରାଉତ

ତା ୭ । ୮ । ୯୩



# ଆଇନଜ୍ଞ ଚଣ୍ଡେଶ୍ୱର ମିଶ୍ର

ଶ୍ରୀ ଗଙ୍ଗାଧର ପାଇକରାୟ
(ସଭାପତି ଉତ୍କଳ ଷ୍ଟେଟ୍ କିଶାନ ସଭା)

ସ୍ୱର୍ଗୀୟ ଚଣ୍ଡେଶ୍ୱର ମିଶ୍ର ରଣପୁରରେ ଆସିଷ୍ଟାଣ୍ଡ ଦେଓ୍ୟାନ୍ ଥିଲେ । ପରେ ନୟାଗଡ଼ରେ ଆସି ଓକିଲତି ଆରମ୍ଭ କଲେ । ଭଲ ଆଇନଜ୍ଞ ହିସାବରେ ତାଙ୍କର ଖ୍ୟାତି ଥିଲା । ସେ ନୟାଗଡ଼ରେ ରହି ସାମୟିକ ଭାବରେ ଗ୍ରାମ ମଙ୍ଗଳ କାର୍ଯ୍ୟରେ ସହଯୋଗ କରୁଥିଲେ । ବିଶେଷତଃ ଆନ୍ତର୍ଜାତିକ କ୍ଷେତ୍ରରେ ସମାଜବାଦ ଓ ଶାନ୍ତି ପାଇଁ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ କେତେକ ନିର୍ଦ୍ଦିଷ୍ଟ ଯୋଜନା ନେଇ କାର୍ଯ୍ୟ କରୁଥିଲେ । ଭାରତ-ଋଷ ସୁହୃଦ୍ ସମିତି ଗଠନରେ ତାଙ୍କର ଦାନ ଅତୁଳନୀୟ । ଏହି କାର୍ଯ୍ୟରେ ନୟାଗଡ଼ ଟାଉନ୍‌ର ବହୁ ବିଶିଷ୍ଟ ଜନସେବୀ, ଶିକ୍ଷାବିତ୍, ସକ୍ରୀୟ ସହଯୋଗ କରୁଥିଲେ । ସୋଭିଏତ୍, କନସଲଟ୍—ଜେନେରଲଙ୍କ ସହ ମୁଁ ନୟାଗଡ଼ ଯାଇଥିଲି । ସ୍ୱର୍ଗୀୟ ମିଶ୍ର କନସଲଟ୍-ଜେନେରଲ ନୟାଗଡ଼ ଯିବାପାଇଁ ଭୁବନେଶ୍ୱର ବାରମ୍ବାର ଆସିଛନ୍ତି । ତାଙ୍କର ଏହି ଉତ୍ସାହ ଯୋଗୁଁ କନ୍‌ସଲଟ-ଜେନେରଲଙ୍କୁ ନେଇ ଆମ୍ଭେମାନେ ନୟାଗଡ଼ ଯାଇଥିଲୁ । ସେଠାରେ ସ୍ୱର୍ଗୀୟ ମିଶ୍ର ଓ ତାଙ୍କ ବନ୍ଧୁମାନେ ସୁସଜ୍ଜିତ ପେଣ୍ଡାଲ କରି ଯେଉଁଭଳି ଅଭ୍ୟର୍ଥନା କରିଥିଲେ, ତାହା ଏ ପର୍ଯ୍ୟନ୍ତ ପାଶୋରି ହୋଇନାହିଁ । ଆଲୋଚନାରେ ଅଂଶ ଗ୍ରହଣ କରି ସେ ଯେଉଁ ଅଭ୍ୟର୍ଥନା ବକ୍ତୃତା ଦେଇଥିଲେ ତାହା ଆନ୍ତର୍ଜାତିକ କ୍ଷେତ୍ରରେ ସାମ୍ରାଜ୍ୟବାଦୀ ବିରୋଧୀ ସୋଭିଏତ୍ ଋଷର ଭୂମିକାକୁ ପ୍ରଶଂସନୀୟ କରିବା ସଙ୍ଗେ ସଙ୍ଗେ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲା । ଶାନ୍ତି ବିନା ବିଶ୍ୱ, ଦେଶ, ଗାଁ ଅଗ୍ରସର ହୋଇ ପାରେନା, ନୀତିବାକ୍ୟ ବକ୍ତୃତା ଜରିଆରେ କହିଥିଲେ । ଆଜି ସେ ନାହାଁନ୍ତି । ଆମ୍ଭମାନଙ୍କୁ ଛାଡ଼ି ଚାଲିଯାଇଛନ୍ତି । ଆଜି ଯେ 'ବିଶ୍ୱ ଶାନ୍ତି'

ବିଶ୍ୱର ଏକମାତ୍ର ପନ୍ଥା ସମସ୍ତ ଜନସାଧାରଣ ଏଥିପାଇଁ ବୁଝି କାର୍ଯ୍ୟ କରିବେ, ଆଶା କରାଯାଏ । ଶାନ୍ତି ଆନ୍ଦୋଳନ ଦୃଢ଼ ହେବ, କାମନା କରି ଏହି କ୍ଷୁଦ୍ର ଲେଖାଟି ଲେଖିଲି ।

ଗଙ୍ଗାଧର ପାଇକରାୟ
ସଭାପତି
ରାଜଧାନୀ ସୋଭିଏତ୍-ଭାରତ ସୁହୃଦ୍ ସଂଘ, ଓଡ଼ିଶା



# ମୁଁ ତାଙ୍କୁ ଯେମିତି ଜାଣେ

ଶ୍ରୀ ଦଣ୍ଡପାଣି ମିଶ୍ର
ପ୍ରକାଶକ 'ଧରିତ୍ରୀ'

ଗଡ଼ଜାତର ରାଜା, ମହାରାଜାମାନେ କିପରି ଶାସନ କରୁଥିଲେ ତା ଅଙ୍ଗେ ନିଭାଇ ଥିବା ଲୋକ ହିଁ କହିପାରିବ । ଓଡ଼ିଶାରେ ଛବିଶଟି ଗଡ଼ଜାତ ଥିଲା । ଷଢ଼େଇକଳା, ଖରସୁଆଁ ଚାଲିଯିବା ପରେ ଅବଶିଷ୍ଟ ଚବିଶଟି ଗଡ଼ଜାତ ଖାସ୍ ଓଡ଼ିଶାରେ ମିଶିଯାଇଛି । ଏଗୁଡ଼ିକ ମିଶିବା ପୂର୍ବରୁ ପ୍ରତ୍ୟେକ ରାଜ୍ୟରେ ଭିନ୍ନ ଭିନ୍ନ ଶାସନ ଚାଲିଥିଲା । କେହି ଏହାକୁ ଅନ୍ଧାରି ଶାସନ କହୁଥିଲାବେଳେ, ଆଉ କେହି ଏହାକୁ ମନମୁଖୀ ହୁଙ୍କାପିଟା ଶାସନ ବୋଲି କହିଥାନ୍ତି । ରାଜା-ମାନଙ୍କର ସାର୍ବଭୌମ କ୍ଷମତା, କିଛି ବାର୍ଷିକ କର ଇଂରେଜ ସରକାରଙ୍କୁ ଦେଇ ଏମାନେ ଅଖଣ୍ଡ କ୍ଷମତା ଭୋଗ କରୁଥିଲେ । ରାଜାଙ୍କ ମୁହଁରୁ ଯାହା ବାହାରିଲା ତାହାହିଁ ଆଇନ୍ । ଏଇ ରାଜାଙ୍କ ତଳକୁ ଯେ ସର୍ବକ୍ଷମତାବାନ ବ୍ୟକ୍ତି ତାଙ୍କୁ ଦେଓ୍ୱାନ କୁହାଯାଉଥିଲା । ଦେଓ୍ୱାନ ହିଁ ରାଜାମାନଙ୍କୁ ହାତ-ମୁଠାରେ ରଖି ତାଙ୍କ ମନଇଛା ଶାସନ ଚଳାଉଥିଲେ ।

ଗଡ଼ଜାତଗୁଡ଼ିକୁ ଆୟ ଓ ଆୟତନ ଦୃଷ୍ଟିରୁ ତିନୋଟି ଭାଗରେ ବିଭକ୍ତ କରାଯାଇଥିଲା । ପ୍ରଥମ ଶ୍ରେଣୀ, ଦ୍ୱିତୀୟ ଶ୍ରେଣୀ, ତୃତୀୟ ଶ୍ରେଣୀ । ରଣପୁର ରାଜ୍ୟଟି ତୃତୀୟ ଶ୍ରେଣୀ ଭାବେ ଗଣ୍ୟ ହେଉଥିଲା । ରାଜାମାନେ ନିଜ ରାଜ୍ୟର ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କୁ ରାଜ୍ୟର ଦେଓ୍ୱାନ୍ ବା ଆସିଷ୍ଟାଣ୍ଟ ଦେଓ୍ୱାନ୍ ଭାବେ ନିଯୁକ୍ତି ଦେଉ ନଥିଲେ । ନିଜ ରାଜ୍ୟର ଉଚ୍ଚଶିକ୍ଷିତ ଅପେକ୍ଷା କମ୍ ଯୋଗ୍ୟତା ଥିବା ବାହାର ବ୍ୟକ୍ତିମାନଙ୍କୁ ଦେଓ୍ୱାନ୍, ଆସିଷ୍ଟାଣ୍ଟ ଦେଓ୍ୱାନ୍ ଭଳି ପଦ ପଦବୀରେ ନିଯୁକ୍ତି ଦେଉଥିଲେ । ନିଜ ରାଜ୍ୟରେ ଥିବା ଉଚ୍ଚଶିକ୍ଷିତମାନଙ୍କୁ ଅନାଦର କରୁଥିଲେ । ଏପରି ଅବସ୍ଥା ଥିଲାବେଳେ ଯେଉଁ ରାଜ୍ୟରେ ସେ ରାଜ୍ୟର କୌଣସି ଶିକ୍ଷିତ ବ୍ୟକ୍ତି ଦେଓ୍ୱାନ ବା ଆସିଷ୍ଟାଣ୍ଟ ଦେଓ୍ୱାନ ହୋଇ ପାରୁଥିଲେ

ସେମାନଙ୍କର ଖ୍ୟାତି ରାଜଦରବାର ଓ ସାଧାରଣଙ୍କ ମଧ୍ୟରେ ପ୍ରକଟିତ ହେଉ-ଥିଲା । ଶ୍ରୀ ଚଣ୍ଡେଶ୍ୱର ମିଶ୍ର ରଣପୁରର ଆସିଷ୍ଟାଣ୍ଟ ଦେଓ୍ୱାନ ଭାବେ ଅବସ୍ଥାପିତ ହେବା ଫଳରେ ତାଙ୍କର ଯୋଗ୍ୟତା ଓ ଦକ୍ଷତା ପ୍ରମାଣିତ ହୋଇ ପାରିଥିଲା ।

ମୁଁ ତାଙ୍କୁ ସର୍ବପ୍ରଥମେ ତାଙ୍କ ନିଜ ଗାଁ କେନ୍ଦୁଆ ରାମଚନ୍ଦ୍ରପୁରରେ ଦେଖିଥିଲି । ଗୋଟିଏ ବରଯାତ୍ରୀ ଦଳରେ ସେ ଗାଁକୁ ଆମେ କେତେଜଣ ଯାଇଥାଉ । ଗାଁମୁଣ୍ଡ ମହାଦେବଙ୍କ ମନ୍ଦିରରେ ପୂର୍ବ ଦିନରୁ ଯାଇ ବରସହ ରହିବାକୁ ହୁଏ । ଚଣ୍ଡେଶ୍ୱର ବାବୁଙ୍କ ଖ୍ୟାତି ଶୁଣି ମୁଁ ତାଙ୍କୁ ଦେଖା କରିବାକୁ ଚାହିଁବାରୁ ବରଯାତ୍ରୀ ଦଳରେ ଥିବା ମୁରବି ଲୋକମାନେ ବାରଣ କଲେ । କହିଲେ, "ସେ ଦେଓ୍ୱାନ ସାହେବ, ବଡ଼ଲୋକ, ତୁ କାହିଁକି ତାଙ୍କୁ ଦେଖା କରିବାକୁ ଯିବୁ । କୁଆଡ଼ୁ କ'ଣ ହେବ ।" ମୁଁ ସେମାନଙ୍କ କଥା ନ ଶୁଣି ତାଙ୍କ ଦୁଆରକୁ ଗଲି । ସେ ଘରେ ଥିବାର ଶୁଣି, କାହାର କିଛି ଅନୁମତି ନ ଲୋଡ଼ି ସିଧା ଭିତରକୁ ଚାଲିଲି । ମୁଁ ଘର ଭିତରେ ପଶୁ ପଶୁ ସେ ଘର ଭିତରୁ ଦୈବାତ୍ ଆସୁଥିଲେ । ନମସ୍କାର କରି ପରିଚୟ ଦେଲି । ବରଯାତ୍ରୀଙ୍କ କଥା କିଛି ପଚାରୁ ପଚାରୁ ମୋ ପାଇଁ ସରବତ ଗ୍ଲାସେ ବରାଦ କଲେ । ବର୍ତ୍ତମାନର ଯେ କୌଣସି ଆଇ. ଏ. ଏସ୍ ଭଳି ସମ୍ଭ୍ରାନ୍ତ ପଦପଦବୀ ଠାରୁ ସେ ସମୟର ଦେଓ୍ୱାନଙ୍କ ପଦମର୍ଯ୍ୟାଦା ବହୁ ଗୁଣରେ ଅଧିକ ଥିଲା; ଭୟପ୍ରଦ ବି । ମୋ ସାଙ୍ଗେ ଖୁସିରେ କେତେପଦ କଥା ହେଲା ପରେ ସେ ରଣପୁର ଗଡ଼ ଅଭିମୁଖେ ଚାଲି-ଗଲେ । ମୋ ଭଳି ଜଣେ ସାଧାରଣ ବ୍ୟକ୍ତିଙ୍କ ସହ ଯେଉଁଭଳି ବ୍ୟବହାର କରିଥିଲେ ତାହା ଫେରି ବରଯାତ୍ରୀ ଦଳକୁ କହିବାରେ କେହି ବିଶ୍ୱାସ କଲେ-ନାହିଁ । ତାଙ୍କର ସେ ସମୟର ଚେହେରା, ମାର୍ଜିତ ଭାଷା ଆଜି ବି ମୋର ମନରେ ଜାଗରିତ ହୋଇ ରହିଛି ।

ତାଙ୍କୁ କେତେକ ଦିଓ୍ୱାନ ବାବୁ କହୁଥିଲା ବେଳେ, ଆଉ କେତେକ କେବଳ ଚଣ୍ଡିବାବୁ ବୋଲି କହିଥାନ୍ତି । ତାଙ୍କ, ଭଗୀରଥି ଭ୍ରାତୃଯୁଗଳ ରଣପୁର ରାଜଦରବାର ସୁନଜରରେ ଥା'ନ୍ତି । ଥରେ ଭଗୀରଥି ମିଶ୍ରଙ୍କ ଉପସ୍ଥିତିରେ ରଣପୁର ଗଡ଼ରେ ଚଣ୍ଡେଶ୍ୱର ବାବୁଙ୍କ ସଙ୍ଗେ ଆଲୋଚନା ହୋଇଥିଲା । ସେଦିନ ମୁଁ ଅନୁଭବ କଲି ଯେ ସେ ଜଣେ ଜାତୀୟ ଭବାପନ୍ନ ଓ ସଂସ୍କୃତିପ୍ରେମୀ ବ୍ୟକ୍ତି । ଲୋକ କଲ୍ୟାଣ କାର୍ଯ୍ୟ ପାଇଁ ଆଗ୍ରହୀ ।

୧୯୩୯ ବେଳକୁ ଗଡ଼ଜାତଗୁଡ଼ିକରେ ପ୍ରଜା ଆନ୍ଦୋଳନ ଘନେଇ ଆଏ । ଚଉରବର୍ଷ ଜାନୁୟାରୀ ପାଞ୍ଚ ତାରିଖ ପୁଷପୂର୍ଣ୍ଣିମା ଦିନ ରଣପୁର ରାଜଦାଣ୍ଡରେ

ମହା ପ୍ରତାପଶାଳୀ ପଲିଟିକାଲ ଏଜେଣ୍ଟ ବେଜେଲ୍‌ଗେଟ୍‌ଙ୍କୁ ଉତ୍ୟକ୍ତ ଜନତା ଠେଙ୍ଗାରେ ବାଡ଼େଇ ବାଡ଼େଇ ମାରିଦେଲେ । ଏପରି ଘଟଣା ବ୍ରିଟିଶ୍ ରାଜତ୍ୱରେ କୌଣସିଠାରେ ଘଟି ନଥିଲା । ଠେଙ୍ଗା କି ଭୟଙ୍କର ମାରଣାସ୍ତ୍ର ବୋଲି ବ୍ରିଟିଶ୍ ପାର୍ଲାମେଣ୍ଟରେ କଥା ଉଠିଥିଲା ଏବଂ ତାହା ପାର୍ଲାମେଣ୍ଟ ସଭ୍ୟ-ମାନଙ୍କୁ ଦେଖାଇ ଦେବାରେ ସମସ୍ତେ ବିସ୍ମିତ ହୋଇ ଯାଇଥିଲେ ।

ଚଣ୍ଡି ବାବୁ ଆସିଷ୍ଟାଣ୍ଟ ଦେଓ୍ୱାନ ପଦବୀରେ ଥିଲେ ମଧ୍ୟ ବହୁ ସମୟରେ ଦେଓ୍ୱାନ ଛୁଟିରେ ଯାଉଥିବାରୁ ସେ ଦେଓ୍ୱାନ କାର୍ଯ୍ୟ ଚଳାଉଥିଲେ । ବେଜେଲ୍‌ଗେଟ୍ ମର୍ଡର ବେଳକୁ ସେ ଦେଓ୍ୱାନ ଦାୟିତ୍ୱରେ ଥିଲେ । କୁହାଗଲା ଚଣ୍ଡି ବାବୁ ନିଜ ରାଜ୍ୟର ଲୋକ ହୋଇ ଥିବାରୁ ଏବଂ ଲୋକଙ୍କ ପ୍ରତି ତାଙ୍କ ହୃଦୟର ନିଭୃତ କୋଣରେ ସହାନୁଭୂତି ରହିଥିବା ଫଳରେ ବେଜେଲ୍‌ଗେଟ୍ ରକ୍ଷା ପାଇ ପାରିଲା ନାହିଁ । ଫଳତଃ ଆସିଷ୍ଟାଣ୍ଟ ଦେଓ୍ୱାନ ଭଳି ମର୍ଯ୍ୟାଦାବନ୍ତ ପଦବୀ ପରିହାର କରିବାକୁ ସେ ପସନ୍ଦ ମଣିଲେ । ବ୍ୟକ୍ତି, ବ୍ୟକ୍ତିତ୍ୱ ନେଇ ସେତେବେଳେ ନାନା କଥାର ଉଦୟ ହୋଇଥିଲା । ସେ ଜଣେ ଜାତୀୟ-ଭାବାପନ୍ନ ଆଡ଼ଭୋକେଟ୍ ଭାବେ ସୁନାମର ସହ ଜୀବନଯାପନ କରୁଥିଲେ ଜନଜୀବନକୁ ରୁଚି ଓ ସୁଚିବନ୍ତ କରି ଆଗେଇ ନେବାର ପ୍ରେରଣାଦାତା ଥିଲେ ।

୧୯୪୭ ବେଳକୁ ରାଜ୍ୟଗୁଡ଼ିକରେ ଶାସନ ସଂସ୍କାରର ହାଓ୍ୱା ବହିଲା । ସବୁ ରାଜଦରବାର ଲୋକମାନଙ୍କୁ କିଛି କିଛି କ୍ଷମତା ହସ୍ତାନ୍ତର କରିବା ପାଇଁ ବାଧ୍ୟ ହେଲେ । କେଉଁଠି ମନୋନୀତ, କେଉଁଠି ନିର୍ବାଚିତ ଲୋକ ପ୍ରତିନିଧିଙ୍କୁ କ୍ଷମତା ଦେବା ପାଇଁ ପର୍ଯ୍ୟାୟକ୍ରମେ ରାଜା ମହାରାଜାମାନେ ଉଦ୍ୟମ ଚଳାଇଲେ । ଯେଉଁ ରାଜ୍ୟରେ ପ୍ରଜାମଣ୍ଡଳ ଆନ୍ଦୋଳନ ଯେତେ ଉଗ୍ର, ସେ ରାଜ୍ୟରେ ସେତିକି ଅଧିକ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା କରିବାର ଉଦ୍ୟମ ହେଲା । ଏହା ଫଳରେ ନୟାଗଡ଼ରେ ଗୋଟିଏ ଲୋକପ୍ରତିନିଧି ମନ୍ତ୍ରିମଣ୍ଡଳ ଗଢ଼ାଯାଇ ରାଜା ସେମାନଙ୍କ ହାତରେ ରାଜ୍ୟ ଶାସନର ବହୁ ଭାର ଅର୍ପଣ କରି ନିଜେ ଗଭର୍ଣ୍ଣର ଭଳି ରହିବା ବ୍ୟବସ୍ଥା କରିଥିଲେ । ରାଜାଙ୍କ ଭାଇ ଶ୍ରୀ ବୃନ୍ଦାବନ ଚନ୍ଦ୍ର ସିଂ ମୁଖ୍ୟମନ୍ତ୍ରୀ । ପ୍ରଜାମଣ୍ଡଳ ନେତା ଶ୍ରୀ ଶ୍ରୀଧର ଦାଶ ଶିକ୍ଷାମନ୍ତ୍ରୀ ଓ ଅନ୍ୟତମ ନେତା ଶ୍ରୀ ବାଞ୍ଛାନିଧି ସେନାପତି ରାଜସ୍ୱ ମନ୍ତ୍ରୀ । ମନ୍ତ୍ରିମଣ୍ଡଳକୁ କ୍ଷମତା ଅର୍ପଣ କରି ଦେଇଥିଲେ ମଧ୍ୟ ରାଜାଙ୍କ ପାଖେ ଥିବା ଘୁରୁଖା ବଡ଼ ବଡ଼ କର୍ମଚାରୀଙ୍କ ଷଡ଼ଯନ୍ତ୍ର ଚାଲିଥାଏ । ମନ୍ତ୍ରିମଣ୍ଡଳକୁ ବଦନାମ କରିବା ପାଇଁ ଭିତିରିଆ ଉଦ୍ୟମ ହେଉଥାଏ । ମନ୍ତ୍ରିମଣ୍ଡଳ ସହିତ ପ୍ରଚ୍ଛନ୍ନଭାବେ ଅସହଯୋଗ

ମଧ୍ୟ । ମନ୍ତ୍ରୀମାନେ ପ୍ରଶାସନ ଦିଗରେ ଅଭିଜ୍ଞ ନଥିବାରୁ ସେମାନେ ସାହାଯ୍ୟ, ସହଯୋଗ ଲୋଡ଼ିଲା ବେଳେ ନିର୍ମଳ ମନରେ ଅନ୍ତ କେତେଜଣଙ୍କୁ ଛାଡ଼ିଦେଲେ ଆଉ କେହି ସାହାଯ୍ୟ କରୁ ନଥିଲେ । ସେମାନଙ୍କର ଧାରଣା ଥିଲା ଏ ମନ୍ତ୍ରି-ମଣ୍ଡଳ ବଦ୍‌ନାମ ମୁଣ୍ଡାଇ ଶୀଘ୍ର ଭାଙ୍ଗିଯିବ ।

ଏଣେ ଶାସନ ପରିଚାଳନା କରିବା ପାଇଁ ଡଃ ମହତାବ, ସାରଙ୍ଗଧର ଦାସ ଓ ସେହିଭଳି ବ୍ୟକ୍ତିମାନଙ୍କର ସାହାଯ୍ୟ, ସହାନୁଭୂତି ଘନ ଘନ ଲୋଡ଼ିବାକୁ ପଡ଼ୁଥିଲା । ସେହିମାନଙ୍କ ପରାମର୍ଶକ୍ରମେ ଗଡଜାତ କାଳର ବଡ଼ ବଡ଼ ଅଫିସରଙ୍କୁ ବାହାର କରାଯାଇ ମନ୍ତ୍ରିମଣ୍ଡଳକୁ ସାହାଯ୍ୟ କଲାଭଳି ସବୁ ବିଭାଗର ମୁଖ୍ୟମାନଙ୍କୁ ନିଯୁକ୍ତି ଦିଆଯିବା ଭିତିରିଆ ନିଷ୍ପତ୍ତି ନିଆଗଲା । ସେତିକିବେଳେ ଅବସରପ୍ରାପ୍ତ ମାନ୍ଦ୍ରାଜର ସବ୍‌ଜଜ ଶ୍ରୀ ଗଣେଶ୍ୱର ମହାପାତ୍ରଙ୍କୁ ରାଜ୍ୟର ଜୁଡ଼ିସିଆଲ୍ ଅଫିସର, ପୂର୍ଣ୍ଣଚନ୍ଦ୍ର ଦାଶଙ୍କୁ ଶିକ୍ଷା ବିଭାଗ ଅଫିସର ଭାବେ ଅବସ୍ଥାପିତ କରାଗଲା । ମନ୍ତ୍ରିମଣ୍ଡଳର ମୁଖ୍ୟ ପରାମର୍ଶଦାତା ନେଇ ଆଲୋଚନା ହେଲାବେଳେ ଚଣ୍ଡିବାବୁଙ୍କ ନାଁ ଉଠିଲା । ସେ ଜଣେ ଉଚ୍ଚଶିକ୍ଷିତ, ଯୋଗ୍ୟ ଲୋକ ଗଣତନ୍ତ୍ର ସପକ୍ଷବାଦୀ ବ୍ୟକ୍ତି ତଥା ରାଜ୍ୟ ଶାସନ ବିଷୟରେ ତାଙ୍କର ଗଭୀର ଅଭିଜ୍ଞତା ଥିବାରୁ ସମସ୍ତେ ଏହାକୁ ପସନ୍ଦ କଲେ । ତାଙ୍କ ସହିତ ଯୋଗ-ସୂତ୍ର ପ୍ରତିଷ୍ଠା କରି ତାଙ୍କୁ ଆଣିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଯାଇଥିଲା । ମୁଁ ମନ୍ତ୍ରିମଣ୍ଡଳର ବାର୍ତ୍ତା ନେଇ ଚଣ୍ଡିବାବୁଙ୍କ ସହ କଥା ହେଲି । ମୋ କଥା ଶୁଣୁ ଶୁଣୁ ତାଙ୍କ ମନରେ କିଛି 'କିନ୍ତୁ'ର ଉଦୟ ହୋଇଥିଲା । ରାତିଟି ତାଙ୍କ ଘରେ ରହିଲି । ଅନେକ ଆଲୋଚନା ଓ ଭାବବିନିମୟ । ସବୁ କଥା ଶୁଣି ସେ ମୋ ସହିତ ଏକମତ ହେଲେ । ଗୋଟିଏ କଥା ମୋତେ ବ୍ୟକ୍ତିଗତ ଭାବେ ପଚାରିଥିଲେ, 'ତାହେଲେ ସେ ରହିବେ କେଉଁଠି ।' ମୁଁ ସଙ୍ଗେ ସଙ୍ଗେ କହିଥିଲି, "ମୋର ଖଣ୍ଡେ ଜାଗା ଅଛି, ସେଇଠି ଆପଣ ଘର ତୋଳି ରହିବେ ।" ସେ ସାମାନ୍ୟ ମୁରୁକି ହସା ଦେଇ ଗମ୍ଭୀର ହୋଇ ଯାଇଥିଲେ । ନୟାଗଡ ପହଞ୍ଚି ମନ୍ତ୍ରିମଣ୍ଡଳ ସହ ଆଲୋଚନା ହେଲା । ଶେଷରେ ସେ ସରକାରୀ ଓକିଲଭାବେ ନିଯୁକ୍ତି ପାଇଲେ ମଧ୍ୟ ମୁଖ୍ୟତଃ ମନ୍ତ୍ରିମଣ୍ଡଳଙ୍କ ପରାମର୍ଶଦାତା ଭାବେ କାର୍ଯ୍ୟ କରୁଥିଲେ ।

ରାଜାଙ୍କ ଅମଳରେ ଯେତେ ବଡ଼ ବଡ଼ ଅଫିସର ଥିଲେ ସମସ୍ତଙ୍କୁ ବାହାର କରାଯାଇ ମନ୍ତ୍ରିମଣ୍ଡଳର ଇଚ୍ଛା ମୁତାବକ ରାଜ୍ୟ ଭିତରୁ ଓ ବାହାରୁ ବଡ଼ ବଡ଼ ପଦପଦବୀରେ ନୂଆ ନୂଆ ନିଯୁକ୍ତି ଦିଆଗଲା । ରାଜାଙ୍କଆଡ଼ୁ ଯେଉଁ ଅସୁବିଧା ସୃଷ୍ଟି ହେଉଥିଲା ତାହା କ୍ରମେ ମଉଳି ଗଲା । ଚଣ୍ଡିବାବୁ ରହିଲେ ପରେ

ଟିକକ କଥାକୁ କଟକ ଦୌଡ଼ିବା ଅଭ୍ୟାସ କମିଗଲା । ମୁଁ ନିଜେ ଜାଣିଛି, "ଚଣ୍ଡିବାବୁ ଯେଉଁସବୁ ଲେଖା ଆରମ୍ଭ କରୁଥିଲେ, ତାହା ଖୁବ୍ କମ୍ ସମୟ ଭିତରେ ସାରୁଥିଲେ ଏବଂ ସେଥିରେ ପ୍ରାୟ କଟାକଟି ନଥିଲା ।" ଦରବାର ଶାସନ ସମୟରେ ଦେଓ୍ୱାନ ଯେଉଁ କୋଠାରେ ରହୁଥିଲେ ସେଠି ପ୍ରଜାମଣ୍ଡଳର ଦୁଇଜଣ ମନ୍ତ୍ରୀ ଶ୍ରୀ ଶ୍ରୀଧର ଦାଶ ଓ ବାଞ୍ଛାନିଧି ସେନାପତି ରହୁଥାନ୍ତି । ଚଣ୍ଡିବାବୁ ପ୍ରତ୍ୟେକ ଦିନ ସେଠାରେ ପହଞ୍ଚନ୍ତି ଏବଂ ଅନ୍ୟତମ ମନ୍ତ୍ରୀ ଶ୍ରୀ ବୃନ୍ଦାବନ ସିଂ ମଧ୍ୟ ବେଳେ ବେଳେ ସେଠାକୁ ଆସନ୍ତି । ରାଜ୍ୟ ଶାସନ, ଉନ୍ନୟନ କାର୍ଯ୍ୟ ଆଦିର ଯୋଜନା ଏଇଠାରେ ହିଁ ରୂପରେଖ ପାଉଥିଲା । ବାହାରର ଯେଉଁ ରାଜନୈତିକ ବ୍ୟକ୍ତିମାନେ ମନ୍ତ୍ରିମଣ୍ଡଳ ଗଠନ ପରେ ଆସୁଥିଲେ ବା ଓଡ଼ିଶାର ଯେଉଁ ମନ୍ତ୍ରୀମାନେ ଆସୁଥିଲେ ସେମାନେ ସେହି ମନ୍ତ୍ରୀ ନିବାସକୁ ଆସନ୍ତି ଏବଂ ଚଣ୍ଡିବାବୁ ଆଲୋଚନା କାଳରେ ମନ୍ତ୍ରୀମାନଙ୍କ ସହ ବରବର ଭାଗ ନେଉଥାନ୍ତି । ଆଗନ୍ତୁକମାନେ ଚଣ୍ଡିବାବୁଙ୍କ ପ୍ରସ୍ତାବଗୁଡ଼ିକ ଉପରେ ଗୁରୁତ୍ୱଆରୋପ କରୁଥିବାର ଅନୁଭୂତ ହେଉଥିଲା । ପ୍ରଗ୍ରେସ ବିଭାଗ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥିବାରୁ, ପ୍ରାୟ ସବୁ ବୈଠକରେ ମୁଁ ଯୋଗ ଦେଉଥିଲି ।

ମନ୍ତ୍ରିମଣ୍ଡଳ ଅଧିକରୁ ଅଧିକ କ୍ଷମତାବାନ ଓ ପ୍ରଭାବଶାଳୀ ହୋଇ ଚାଲିବ ବୋଲି ଆଶା କରାଯାଉଥିଲାବେଳେ ଗଡ଼ଜାତଗୁଡ଼ିକ ଓଡ଼ିଶା ସହ ମିଶି ଯିବାର ଶେଷ ସିଦ୍ଧାନ୍ତ ୧୯୪୭ ମସିହା ଡିସେମ୍ବର ମାସରେ, ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଉପସ୍ଥିତିରେ କଟକଠାରେ ହୋଇଗଲା । ୧୯୪୮ ମସିହା ଜାନୁୟାରୀ ଏକ ତାରିଖରେ ଗଡ଼ଜାତଗୁଡ଼ିକ ଲୋପ ପାଇ ଆମ ଓଡ଼ିଶା ସହ ମିଶିଗଲା ।

ଏକଥା ଶୁଣୁ ଶୁଣୁ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିଦେବା କଥା ରାଜାଙ୍କ ପକ୍ଷରୁ ଉଠିଥିଲା । ଏତିକିବେଳେ ମନ୍ତ୍ରିମଣ୍ଡଳ ଅଡୁଆରେ ପଡ଼ିଲେ । ଚଣ୍ଡେଶ୍ୱର ବାବୁ ସେ ସମୟରେ ମନ୍ତ୍ରୀମାନଙ୍କୁ ଯେଉଁ ପରାମର୍ଶ ଦେଇଥିଲେ ତାହା ପ୍ରଣିଧାନ-ଯୋଗ୍ୟ । ପୁରୁଣା ରାଜକର୍ମଚାରୀମାନେ ପିଛିଲା ତାରିଖ ପକାଇ ରାଜାଙ୍କଠାରୁ କିଛି ସୁବିଧା ସୁଯୋଗ ମାରିନେବା ଲାଗି ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରି ଦେବାର ଷଡ଼ଯନ୍ତ୍ର କରିଥିଲେ । ମନ୍ତ୍ରୀମଣ୍ଡଳର ତୁଙ୍ଗ କର୍ମକର୍ତ୍ତାମାନଙ୍କ ମିଳିତ ଉଦ୍ୟମରେ ଏହାର ପ୍ରତିବାଦ କରି ରାଜାଙ୍କର ଏ ଅସାଧୁ ଉଦ୍ଦେଶ୍ୟକୁ ପଣ୍ଡ କରି ଦିଆଯାଇ-ଥିଲା । ଏହି ସମୟରେ ଚଣ୍ଡିବାବୁଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥିଲା । ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ ନାହିଁ । ଯେଉଁ ବୈଧାନିକ ଅସୁବିଧା ତାକୁ ଦୂର କରିବାକୁ ହେବ । ନିୟମାନୁସାରେ ଓଡ଼ିଶା ସରକାରଙ୍କୁ ରାଜାହିଁ କ୍ଷମତା ଅର୍ପଣ

କରିବେ, ମନ୍ତ୍ରିମଣ୍ଡଳ ନୁହଁ । ଶେଷରେ ସ୍ଥିର ହେଲା ଡିସେମ୍ବର ୩୧ ତାରିଖ ଅର୍ଦ୍ଧରାତ୍ରରେ ରାଜା ଓ ମନ୍ତ୍ରିମଣ୍ଡଳ ଓ ଓଡ଼ିଶା ସରକାରଙ୍କର ପ୍ରତିନିଧି ଆଡ଼୍‌ମିନିଷ୍ଟ୍ରେଟର ଏକାଠି ଗୋଟିଏ ଜାଗାରେ ବସି କ୍ଷମତା ହସ୍ତାନ୍ତର ହେବ । ସେ ଅନୁସାରେ ସବୁ କାଗଜ ପତ୍ର ଆଗରୁ ସ୍ଥିର କରାଗଲା । ଗୋଟିଏ ମୁହୂର୍ତ୍ତରେ ମନ୍ତ୍ରିମଣ୍ଡଳ କ୍ଷମତାରୁ ଅପସରି ଗଲେ । ରାଜା ଆଡ଼୍‌ମିନିଷ୍ଟ୍ରେଟରଙ୍କୁ କ୍ଷମତା ଅର୍ପଣ କଲେ । ଏହା ଫଳରେ ମିଶ୍ରଣ ପୂର୍ବରୁ ଅନ୍ୟ ରାଜ୍ୟରେ ଯେଉଁଭଳି ରାଜା ସେମାନଙ୍କ ନିଜର ଲୋକଙ୍କୁ ବା ଅନୁଗତ କର୍ମଚାରୀମାନଙ୍କୁ ସ୍ଥାୟୀ, ଅସ୍ଥାୟୀ ସମ୍ପତ୍ତି ଦାନ କରିବାକୁ ସୁବିଧା ସୁଯୋଗ ପାଇଥିଲେ, ନୟାଗଡ଼ ରାଜ୍ୟରେ ସେଭଳି ଘଟି ନ ଥିଲା ।

ମିଶ୍ରଣ ବେଳକୁ ଚଣ୍ଡିବାବୁ ନୟାଗଡ଼ର ଜଣେ ଅଧିବାସୀ । ମୋର ଥିବା ଜାଗା ଖଣ୍ଡିକ ତାଙ୍କ ନାମରେ ଆଗରୁ କରି ଦେଇଥିଲି । ସେଇଠି ସିଏ ଘର କରି ରହିଲେ । ନୟାଗଡ଼ର ପ୍ରତ୍ୟେକ ବଡ଼ ବଡ଼ କାର୍ଯ୍ୟରେ ତାଙ୍କର ସହଯୋଗ ଓ ସାହାଯ୍ୟ ବରାବର ନିଆଯାଇଥିଲା । ଖ୍ୟାତି ଥିବା ଅଳ୍ପ କେତେ-ଜଣଙ୍କ ମଧ୍ୟରେ ସେ ଜଣେ ଯୋଗ୍ୟ ଆଡ଼୍‌ଭୋକେଟ୍ ରୂପେ ସୁଖ୍ୟାତି ଅର୍ଜ୍ଜନ କରିଥିଲେ । ମୁଁ ନିଜେ ଜଣେ ମହକିଲ ମାନଙ୍କଠାରୁ କଥା ଶୁଣିଲି ପରେ ଯେଉଁ ମକଦ୍ଦମା ତା ସପକ୍ଷରେ ଯିବନାହିଁ ବୋଲି ସେ ହୃଦ୍‌ବୋଧ କରୁଥିଲେ, ତାର ସମସ୍ତ ଅନୁନୟ ବିନୟ ସତ୍ତ୍ୱେ ସେ ମକଦ୍ଦମା ସେ ଲଢ଼ୁ ନ ଥିଲେ । ନୟାଗଡ଼ କଲେଜ ପ୍ରତିଷ୍ଠା, ଜିଲ୍ଲା ଗଠନ ଆଦି କାର୍ଯ୍ୟରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ମିଶ୍ରଣ ପରେ ଓଡ଼ିଶାର ଗଭର୍ଣ୍ଣର କୈଳାସ ନାଥ କାଟ୍‌ଜୁ ନୟାଗଡ଼ ଆସିଥିଲା ବେଳେ ତାଙ୍କୁ ଯେଉଁ ସମ୍ବର୍ଦ୍ଧନା ଦିଆଯାଇଥିଲା, ଏବଂ ସେ ସମ୍ବର୍ଦ୍ଧନାରେ ଯେଉଁ ଅଭିନନ୍ଦନ ପତ୍ର ପାଠ କରାଯାଇଥିଲା ଏଥିରେ ସେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ପ୍ରଜାମଣ୍ଡଳ ନେତାମାନଙ୍କ ସହ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ସୁ-ସମ୍ପର୍କ ରହି ଆସିଥିଲା । ପ୍ରଜାମଣ୍ଡଳ କଂଗ୍ରେସରେ ରୂପାନ୍ତରିତ ହେବା ସମୟରେ ଆମ୍ଭମାନଙ୍କ ଅନୁରୋଧକ୍ରମେ ସେ କଂଗ୍ରେସରେ ଯୋଗ ଦେଇଥିଲେ । ତାଙ୍କ ଯୋଗଦେବା ପଛରେ ନୟାଗଡ଼ ଓ ନୟାଗଡ଼ ବାହାରର ବିଶିଷ୍ଟ କଂଗ୍ରେସ ନେତା ଓ ମନ୍ତ୍ରୀମାନଙ୍କର ପ୍ରୋତ୍ସାହନ ନିବିଡ଼ ଭାବେ ରହିଥିଲା । ବହୁବାର ନିର୍ବାଚନ କ୍ଷେତ୍ରକୁ ଆଣିବା ପାଇଁ ଉଦ୍ୟମ ହୋଇଥିଲେ ମଧ୍ୟ ସେ ତାହା ଗ୍ରହଣ କରି ନ ଥିଲେ । କ୍ଷମତା କୂଟନୀତି ରାଜନୀତି ଚକ୍ରରେ ପ୍ରବେଶ କରିବାକୁ ସେ କୁଣ୍ଠାବୋଧ କରୁଥିଲେ । କାରଣ ଛଳନା କରି କିଛି କହିବାର ଅଭ୍ୟାସ ତାଙ୍କ ପାଖେ ନ ଥିଲା । ଯାହା ଉଚିତ୍ ବୋଲି ଭାବୁଥିଲେ,

ତାହା ଅନ୍ୟର ଅପ୍ରିୟ ହେଉ ପଛେ ଠୋ-ଠା କରି କହି ଦେଉଥିଲେ । ସେ ଯେପରି ଉଦ୍ର, ମର୍ଯ୍ୟାଦାବନ୍ତ ଥିଲେ, ସେହିପରି କ୍ଷଣକୋପୀ ମଧ୍ୟ । ଗୋଟିଏ କଥାର ସିଦ୍ଧାନ୍ତ ନେଲା ପରେ, ସେ ସିଦ୍ଧାନ୍ତରୁ ତାଙ୍କୁ ବିରତ କରି ହେଉ ନ ଥିଲା ।

ଛାତ୍ର ଜୀବନରେ ସେ ଯେଉଁମାନଙ୍କ ଗହଣରେ ଶିକ୍ଷା ଲାଭ କରୁଥିଲେ, ସେଥିରୁ ଅନେକ ଓଡ଼ିଶାର ଯୋଗ୍ୟ ସନ୍ତାନ ରୂପେ ସୁନାମ ଅର୍ଜନ କରିଛନ୍ତି । ଶେଷ ଜୀବନ ପର୍ଯ୍ୟନ୍ତ ସେମାନଙ୍କ ସହିତ ଚଣ୍ଡିବାବୁଙ୍କର ଆତ୍ମୀୟତା ଅକ୍ଷୁଣ୍ଣ ରହିଥିଲା । କେବଳ ଜଣେ ସାହିତ୍ୟ, ସଂସ୍କୃତିପ୍ରେମୀ ନୁହନ୍ତି ; ସେ ଦିଗରେ ସେ କିଛି ପ୍ରତିଷ୍ଠା ଅର୍ଜନ ମଧ୍ୟ କରିଛନ୍ତି । ଏକଦା ଗଳ୍ପ, କବିତା ଲେଖୁଥିଲେ । ମୁଁ ତାଙ୍କୁ ବରବର ଲେଖାଲେଖି କରିବା ପାଇଁ ଅନୁରୋଧ କରୁଥାଏ । ସେ ସମୟରେ ତାଙ୍କର ସ୍ମରଣ ଥିବା କବିତା, ଗଳ୍ପ ବିଷୟରେ କହିଥାନ୍ତି । ମୋର ସେ ମାମୁଁ ଶ୍ୱଶୁର, ମୁଁ ତାଙ୍କ ଭଣିଜା ଜ୍ୱାଇଁ । କିନ୍ତୁ ଏ ସମ୍ପର୍କ ଆମ ଆଲୋଚନା କାଳରେ କେବେ ମନକୁ ଆସି ନ ଥାଏ । ସେ ମୋତେ ବାବାଜୀ ଡାକନ୍ତି । ସମାଜ ନୀତି, ରାଜନୀତି, ଅର୍ଥନୀତି ସହ ସ୍ଥାନୀୟ ସମସ୍ୟା ତଥା ଲୋକାଚାର ବିଷୟରେ ଦୀର୍ଘ ଆଲୋଚନା ହୋଇଥାଏ । ପରିବର୍ତ୍ତିତ ଅବସ୍ଥାରେ ଯେଉଁସବୁ ଦୁର୍ନୀତି ଭ୍ରଷ୍ଟାଚାର ପ୍ରବଳରୁ ପ୍ରବଳତର ହୋଇ ଆସୁଛି । ତା ଦେଖି ସେ ବ୍ୟଥିତ ହେଉଥିଲେ । ବେଳେ ବେଳେ ଚିଡ଼ି ଉଠୁଥିଲେ ମଧ୍ୟ ।

ତାଙ୍କ ସହିତ ଦେଖା ହେଲା ଦିନୁ ଶେଷ ଜୀବନ ପର୍ଯ୍ୟନ୍ତ ବହୁବାର ବହୁ ଘଟଣାରେ ଏକାଠି ରହିଛୁ । ଏକାଠି କାମ କରିଛୁ । ଏକାଠି ସଭା ସମିତିକୁ ଯାଇଛୁ । ମିଳିତ ଖର୍ଚ୍ଚରେ ପାମ୍ଫଲେଟ୍, ଲିଫ୍‌ଲେଟ୍ ଛପାଇ ବାଣ୍ଟିଛୁ । ସମ୍ପର୍କ ଯେଉଁଳି ଘନିଷ୍ଠ, ସେଉଁଳି ମଧୁର ଥିଲା । ଏଭଳିକି ଆମେ ଦିହେଁ ଏକା ରଙ୍ଗର ଖଦଡ଼ ଜହରକୋଟ ଗୋଟିଏ ଦର୍ଜିପାଖେ କରି ଏକା ସମୟରେ ପିନ୍ଧୁଥିଲୁ । ସେ ଜଣେ ନିର୍ଭୀକ ସମାଜ ସଂସ୍କାରକ ଓ ନୀରବ ବିପ୍ଳବୀ ଥିଲେ । ସେହିପରି ଜଣେ ପରିହାସପ୍ରିୟ ମଧ୍ୟ । ବେଳେବେଳେ ସେ ଏପରି ଗୋଟିଏ ଗୋଟିଏ କଥାର ଅବତାରଣା କରନ୍ତି, ଯେଉଁଥିରୁ ହସର ଲହରୀ ଖେଳିଯାଏ । ଭୋଜି ଭାତ, ଉତ୍ସବ, ଆଲୋଚନା ସଭା ଓ ସାଧାରଣ ସଭା ହେବା ଆଗରୁ ମୋତେ କହିଥାନ୍ତି, “ଆସିବ, ମିଶିକରି ଯିବା” । ଥରେ ଗୋଟିଏ ମାଙ୍ଗଳିକ କାମରେ ନୟାଗଡ଼ ନିକଟ ଲେଙ୍କୁଡ଼ି ପଡ଼ା ଗ୍ରାମକୁ ଆମେ ଯାଇଥାଉ । ଜଣେ କବିସନ୍ଧା ଭାବେ ସେ ଗ୍ରାମର ଶ୍ରୀ ଚିନ୍ତାମଣି ଷ୍ଟାଇଁ ବେଶ୍ ସୁନାମ ଅର୍ଜନ କରିଥାନ୍ତି ।

ଅନେକ ଆଡ୍‌ଭୋକେଟ୍‌ଙ୍କ ଅପେକ୍ଷା ତାଙ୍କର କଚେରି ଜ୍ଞାନ ଅଧିକ ଥାଏ । ତାଙ୍କର ବାଡ଼ି, ବଗିଚ୍ଛ, ଜମିବାଡ଼ି, ଘର ଦ୍ୱାର ଦେଖି ସେ ଏତେ ମୁଗ୍‌ଧ ହୋଇ-ଗଲେ ଯେ, ସଙ୍ଗେ ସଙ୍ଗେ ସମସ୍ତଙ୍କ ମେଳରେ କହି ଉଠିଲେ, "ପ୍ରଭୁ ! କର ମୋତେ ଚିନ୍ତାମଣି ଯାଇଁ" । ଅନେକ ଦିନ ପର୍ଯ୍ୟନ୍ତ ନୟାଗଡ଼ର ବହୁ ବୁଦ୍ଧିଜୀବୀଙ୍କ ମଧ୍ୟରେ ଏହା ଏକ ଚର୍ଚ୍ଚାର ବିଷୟ ହୋଇଥିଲା ।

ଦୀର୍ଘ ଷୋହଳ ବର୍ଷ ପରେ ତାଙ୍କର ସୁ-ଯୋଗ୍ୟ ସନ୍ତାନ, ସୁ-ସାହିତ୍ୟିକ ଉମାଶଙ୍କରଙ୍କ ଠାରୁ ତାଙ୍କ ବିଷୟରେ ଏକ ସ୍ମରଣିକା ପ୍ରକାଶ ପାଇଁ ଲେଖା ଦେବା ଅନୁରୋଧ ପତ୍ର ପାଉ ପାଉ ମନରେ ଅପାର ଆନନ୍ଦର ସଞ୍ଚାର ହେଲା । ଲେଖିବା ପାଇଁ ନୁହେଁ, ତାଙ୍କ ପିତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ସେ ମନେ ରଖିଥିବା ପାଇଁ । ଏ କ୍ଷେତ୍ରରେ ତୁରସ୍କର ବିପ୍ଳବୀ କବି ଥରେ ଯାହା କହିଥିଲେ, ତାର କିଛି ଅଂଶ ଉଦ୍ଧୃତ କରିବାକୁ ଉଚିତ୍ ମନେ କରେ । ସେ କହିଥିଲେ— "ବିଂଶ ଶତାବ୍ଦୀରେ ଶୋକର ପରମାୟୁ ମାତ୍ର ଗୋଟିଏ ବର୍ଷ । ଅତି ବେଶିରେ ମୃତ୍ୟୁ ପରେ ଜଣକୁ ତାର ଆତ୍ମୀୟ ସ୍ୱଜନ ମନେ ରଖି ଶୋକ କରିଥାଏ ।" କିନ୍ତୁ ତେଇଶି ବର୍ଷ ପରେ ବି ଜଣେ ଯେ ଶୋକ ବିହ୍ୱଳ ଚିତ୍ତରେ ପିତାଙ୍କୁ ମନେ ରଖି ସ୍ମରଣିକାଟିଏ ପ୍ରକାଶ କରିବାକୁ ଚିନ୍ତା କରିଛି ଏହାହିଁ ଆମମାନଙ୍କ ପାଇଁ ଗର୍ବ ଓ ଗୌରବର ପାଣ୍ଠି ହୋଇ ରହିବ । ଏଇଠି ବିଶ୍ୱ ବିପ୍ଳବୀ ତୁରସ୍କ କବି ହିକ୍‌ମତ ହାର ମାନିଲେ ବୋଲି କହିବା ଅତ୍ୟୁକ୍ତି ହେବ ନାହିଁ ।

ଦଣ୍ଡପାଣି ମିଶ୍ର
ଠିକଣା
ଘର ନଂ ଏଲ୍. ବି. ୪୧୧
ଖ୍ରୀମଟାଙ୍ଗୀ ହାଉସିଂବୋର୍ଡ କଲୋନୀ
ଫେଜ୍—୨
ପୋଷ୍ଟ୍—ଭୁବନେଶ୍ୱର—୭୫୧୦୦୨



# ଏକ ଅନବଦ୍ୟ ପ୍ରତିଭାର ସ୍ମୃତି ଚାରଣ

**ଶ୍ରୀ ରମେଶ ଚନ୍ଦ୍ର ପଣ୍ଡା**
( ପୂର୍ବତନ ବିଧାୟକ )

ରଣପୁର ଗୋଟିଏ କ୍ଷୁଦ୍ର ଗଡ଼ଜାତ ହେଲେ ହେଁ, ଏହାର ଐତିହ୍ୟ ଓ ପରମ୍ପରା ଅନବଦ୍ୟ । ବିଭିନ୍ନ ସମୟରେ ବହୁ ପ୍ରତିଭବାନ ବ୍ୟକ୍ତି ଏଠି ଜନ୍ମ ଗ୍ରହଣ କରିଛନ୍ତି ଓ ଆପଣାର ପ୍ରତିଭା ଓ କାର୍ଯ୍ୟାବଳୀରେ ରଣପୁରର ଇତିହାସକୁ ଋଦ୍ଧିମନ୍ତ କରିଛନ୍ତି । ସାମନ୍ତସାହୀ ଯୁଗରେ ରଣପୁର ରାଜପରିବାର ଲୋକେ ପୁରୀ ଗଜପତି ମହାରାଜାଙ୍କ ସହ ଦ୍ୱନ୍ଦରେ ଅବତୀର୍ଣ୍ଣ ହୋଇ ଆପଣାର ବୀରତ୍ୱ ବହୁଧା ପ୍ରତିପାଦିତ କରିଥିଲେ । ପୁରୀ ଢାଞ୍ଚାରେ ରଣପୁରର ବଡ଼ଦାଣ୍ଡ, ହରଚଣ୍ଡୀ ସାହି, ସାଗର ପୋଖରୀ, ରାଜପରିବାରର ନରେନ୍ଦ୍ର ଉପାଧୀ, ରଥଯାତ୍ରା ଓ ଚନ୍ଦନ ଯାତ୍ରା ଏହି କିମ୍ବଦନ୍ତୀର ମୂକସାକ୍ଷୀ ।

ପରବର୍ତ୍ତୀ ସମୟରେ ସାମନ୍ତସାହୀ ଓ ବ୍ରିଟିଶ ଶାସନ ବିରୋଧୀ ଆନ୍ଦୋଳନରେ ରଣପୁରର ଜନଗଣ ଯେଉଁ ବୀରତ୍ୱ ପ୍ରଦର୍ଶନ କରିଛନ୍ତି, ତାହାର ପଟାନ୍ତର ନାହିଁ । ତତ୍କାଳୀନ ବ୍ରିଟିଶ ପଲିଟିକାଲ ଏଜେଣ୍ଟଙ୍କୁ ଶୂନ୍ୟ ହସ୍ତରେ ଆଘାତ କରି ଓ ତାଙ୍କ ଦ୍ୱାରା ଗୁଳିବିଦ୍ଧ ହୋଇ ଅର୍ଜୁନ ରାଉତ ଶହୀଦତ୍ୱ ବରଣ କଲେ । ବିକ୍ଷୁବ୍ଧ ବିଦ୍ରୋହୀ ଜନଗଣ ଠେଙ୍ଗାରେ ପିଟିପିଟି ପଲିଟିକାଲ ଏଜେଣ୍ଟଙ୍କୁ ହତ୍ୟା କରି ବିଶ୍ୱ ଇତିହାସରେ ଆପଣାର ପରିଚିତି ରଖିଯାଇଛନ୍ତି । ଏହି ହତ୍ୟାକାଣ୍ଡରେ ତତ୍କାଳୀନ ଜନନେତାମାନଙ୍କୁ ସମ୍ପୃକ୍ତ କରି ଦଣ୍ଡ ଦେବାର ଯେଉଁ ଚକ୍ରାନ୍ତ ମୂଳକ ବ୍ୟବସ୍ଥା ହୋଇଛି ତାହା ବ୍ରିଟିଶ ଶାସନର ପଦଲେହନ-କାରୀ ମାନଙ୍କର ନିଷ୍ଠୁର ଆଚରଣର ସାକ୍ଷ ବହନ କରେ । ସ୍ୱାଧୀନତାର

ପରବର୍ତ୍ତୀ କାଳରେ ପ୍ରଚଳିତ ଶାସନଧାରା ବିରୁଦ୍ଧରେ ସଂଗ୍ରାମ କଲାବେଳେ ଏହି ପରମ୍ପରାର କିଭଳି ସାର୍ଥକ ଦାୟାଦ ହେବେ ତାହାହିଁ ସେମାନଙ୍କର ଆଧେୟ ହୋଇ ଆସିଛି । ରଣପୁରର ଐତିହ୍ୟର ସ୍ମୃତିଚାରଣ ବେଳେ ରଣପୁରର ସାଂସ୍କୃତିକ ଜୀବନର ବସନ୍ତରାସ, କଳୀୟଦଳନ, ଭକ୍ତଚରଣଙ୍କର ମଥୁରା-ମଙ୍ଗଳ, କବିଚନ୍ଦ୍ର ପଟ୍ଟଯୋଶୀଙ୍କର ସଙ୍ଗୀତ ଲେଖାର ଗୁରୁତ୍ୱ ଏଡ଼ାଇ ଦେଇ ହେବ ନାହିଁ ।

ଏହି ପରିପେକ୍ଷୀରେ ରଣପୁରର ଅନ୍ୟତମ ପ୍ରତିଭବାନ ବ୍ୟକ୍ତି ସ୍ୱର୍ଗୀୟ ଚଣ୍ଡେଶ୍ୱର ମିଶ୍ରଙ୍କର ଅବଦାନକୁ ଉପେକ୍ଷା କରାଯାଇ ପାରିବ ନାହିଁ । ରଣପୁରରେ ପଲଟିକାଲ ଏଜେଣ୍ଟ ହତ୍ୟାକାଣ୍ଡ ବେଳେ ସେ ସର୍ବ କନିଷ୍ଠ ଦିଓ୍ୱାନ ଥିଲେ । କିନ୍ତୁ ତାଙ୍କ ଶିକ୍ଷା, ଦୀକ୍ଷା, ସଂସ୍କୃତି ତାଙ୍କୁ ବାଧ୍ୟ କରିଥିଲା ରଣପୁର ରାଜଶାସନ ପାଇଁ ବାହ୍ୟିକ ଆନୁଗତ୍ୟ କିନ୍ତୁ ପ୍ରଜା ଆନ୍ଦୋଳନର ନେତାମାନଙ୍କ ପାଇଁ ଲୁକ୍କାୟିତ ଭାବରେ ସାହାଯ୍ୟ ସହଯୋଗ ଓ ପ୍ରୋତ୍ସାହନ ଦେବା । କିନ୍ତୁ ଏହି ଉଲ୍ଲେଖନୀୟ ଭୂମିକା ଏକ ବିବଦମାନ ବିଶେଷଣର ବିଷୟବସ୍ତୁ ହୋଇଛି ।

ଏ ସମ୍ପର୍କରେ ଦୁଇଟି ପରସ୍ପର ବିରୋଧୀ ମନ୍ତବ୍ୟ ଦେଖିବାକୁ ମିଳେ । ପ୍ରଥମଟି ହେଉଛି ଶ୍ରୀଯୁକ୍ତ ରାମଚନ୍ଦ୍ର ରାମଙ୍କର, "ସଂଗ୍ରାମୀ" ପୁସ୍ତକରେ ଚଣ୍ଡେଶ୍ୱର ମିଶ୍ରଙ୍କୁ ରାଜତନ୍ତ୍ରର ପଦଲେହନକାରୀ ଓ ଜନ ଆନ୍ଦୋଳନ ପରିପନ୍ଥୀ ବୋଲି ଚିତ୍ରଣ କରାଯାଇଛି । ସେହି ପୁସ୍ତକର ପ୍ରଜା ଆନ୍ଦୋଳନରେ ନିଜ ପରିବାରର ଅବଦାନକୁ ଯେଉଁଳି ବହୁବାଚକ ଭାବରେ ପ୍ରତିପାଦିତ କରାଯାଇଛି ସେଭଳି ନିଜର ଆଇନ ବ୍ୟବସାୟର ପ୍ରତିଦ୍ୱନ୍ଦୀ ସ୍ୱର୍ଗୀୟ ମିଶ୍ରଙ୍କୁ ନ୍ୟୂନ କରି ପ୍ରତିପାଦିତ କରିବାକୁ ଅପଚେଷ୍ଟା ହୋଇଛି । ଏହାକୁ ତାଙ୍କର ବ୍ୟବସାୟଗତ ଜୀବନର ଈର୍ଷା ଓ ଅସୂୟା ଅଥବା ତାଙ୍କର ଆତ୍ମକେନ୍ଦ୍ରିକ ଭ୍ରମାତ୍ମକ ବିଗ୍ରହର ପରିପ୍ରକାଶ ହୋଇପାରେ । କାରଣ ଏ ସମ୍ପର୍କରେ ମୁଁ ସେ ସମୟର ପ୍ରଜାଆନ୍ଦୋଳନର ଯେଉଁ ମୁଖ୍ୟ ନେତାମାନେ ଏବେ ବି ଜୀବିତ ଥିଲେ ସେମାନଙ୍କ ସହ ଆଲୋଚନା କରିଛି । ଏ ସମ୍ପର୍କରେ ସ୍ୱର୍ଗୀୟ ମିଶ୍ରଙ୍କର ଭିଣୋଇ ମଦନ ମୋହନ ଦାଶ ଓ ମୋର ପିତୃବ୍ୟ ମୁରଲୀଧର ପଣ୍ଡାଙ୍କ ବକ୍ତବ୍ୟ ଉପରେ ଗୁରୁତ୍ୱ ରଖେ । କାରଣ ମଦନ ମୋହନ ଦାଶଙ୍କ ଆଜୀବନ କାରାଦଣ୍ଡ ଘୋଷଣା ପରେ ସ୍ୱର୍ଗୀୟ ମିଶ୍ରଙ୍କର ଭଗିନୀ ଓ ଶ୍ରୀ ଦାଶଙ୍କର ଧର୍ମପତ୍ନୀ ଦୁଃଖରେ ମ୍ରିୟମାଣ ହୋଇ ଆତ୍ମହତ୍ୟା କରିଥିଲେ । ତାଙ୍କର ଭାଇ ସ୍ୱର୍ଗୀୟ ମିଶ୍ର ଚକ୍ରାନ୍ତର ଇନ୍ଦ୍ରଜାଲ କାଟି ତାଙ୍କୁ ସାହାଯ୍ୟ କରିବାରେ ବ୍ୟର୍ଥ ହୋଇଥିବାରୁ ସେ ଏଭଳି କାଣ୍ଡ କରିଥିଲେ ।

ଶ୍ରୀ ଦାଶଙ୍କର ମତରେ ପ୍ରଜାଆନ୍ଦୋଳନର ନେତୃବୃନ୍ଦ ସ୍ୱର୍ଗୀୟ ମିଶ୍ରଙ୍କ ଠାରୁ ଅନୁକମ୍ପା ଓ ସାହାଯ୍ୟ ପାଉଥିଲେ । ସେ ସମୟରେ ରାଜ କର୍ମଚାରୀମାନେ ଜନସାଧାରଣଙ୍କର ନିଷ୍ଠୁର ବିରୋଧୀ ବୋଲି ଆପଣାର ପରିଚିତି ଦେଇ ନ ପାରିଲେ ରାଜ ଶାସନର କ୍ରୁରଦୃଷ୍ଟି ସେମାନଙ୍କର ରହୁଥିଲା । ଶ୍ରୀ ଦାଶଙ୍କର ପ୍ରଜାଆନ୍ଦୋଳନ ସହ ସମ୍ପୃକ୍ତି ସ୍ୱର୍ଗୀୟ ମିଶ୍ରଙ୍କୁ ରାଜଶାସନର ସନ୍ଦେହର ପରିଧି ଭିତରେ ରଖିଥିଲା । ଏହି ପରିସ୍ଥିତିରେ ସେ ଶ୍ରୀ ଦାଶଙ୍କୁ ପଲିଟିକାଲ ଏଜେଣ୍ଟ ମର୍ଡ଼ର କେଶରୁ ରକ୍ଷା କରିବା ପାଇଁ ଯେତିକି ସାହାଯ୍ୟ କରିବା କଥା ତାହା କରିପାରି ନଥିଲେ । ସେମାନଙ୍କ ଠାରୁ ଏ ବକ୍ତବ୍ୟ ଶୁଣିଲା ପରେ ଶ୍ରୀଯୁକ୍ତ ରାମଚନ୍ଦ୍ର ରାମଙ୍କର ବିଶ୍ଳେଷଣର ଐତିହାସିକ ସତ୍ୟତା ଉପରେ ମୋର ଓ ଅନ୍ୟମାନଙ୍କର ସନ୍ଦେହ ଜନ୍ମିବା ସ୍ୱାଭାବିକ ।

ସ୍ୱର୍ଗତ ମିଶ୍ର ପରବର୍ତ୍ତୀ କାଳରେ ରଣପୁର ଅଞ୍ଚଳର ପ୍ରଥମ ଓ ଦକ୍ଷ ଆଇନଜୀବୀ ହିସାବରେ ପ୍ରତିଷ୍ଠା ଲାଭ କରିଥିଲେ । ରଣପୁରରେ ଶିକ୍ଷାର ବିକାଶ ପାଇଁ ଓ କାଳୀୟ ଦଳନ ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟ ପରିପୁଷ୍ଟ କରିବା ପାଇଁ ତାଙ୍କର ଭୂମିକା ରଣପୁର ବାସୀଙ୍କ ପାଖରେ ଅବିସ୍ମରଣୀୟ । ଆଜି ହୁଏତ ରଣପୁର ଅଞ୍ଚଳରେ ତିରିଶଟି ହାଇସ୍କୁଲ ପ୍ରତିଷ୍ଠା ହୋଇଛି । କିନ୍ତୁ ସେଦିନ ୧୯୪୪ ମସିହାରେ ରଣପୁରରେ ଗୋଟିଏ ହାଇସ୍କୁଲ ମଧ୍ୟ ନ ଥିଲା । ତାଙ୍କର ପ୍ରଗାଢ଼ ଉଦ୍ୟମ ଯୋଗୁଁ ରଣପୁରରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରାଯାଇ ଉଚ୍ଚ ଶିକ୍ଷାଦାନ ପାଇଁ ପ୍ରଥମ ସୁଯୋଗ ସୃଷ୍ଟି ହୋଇଥିଲା । ଆଜି ତାଙ୍କର ମୃତ୍ୟୁ-ବାର୍ଷିକୀରେ ସ୍ମୃତିଚାରଣ କଲାବେଳେ ତାଙ୍କର ବହୁମୁଖୀ ପ୍ରତିଭାର ସାମାନ୍ୟ କଥନରେ ଆପଣାର ଶ୍ରଦ୍ଧାଞ୍ଜଳୀ ପ୍ରଜ୍ଞାପିତ କରୁଛି । ଇତି ।

ରମେଶ ଚନ୍ଦ୍ର ପଣ୍ଡା



# "ମୁଁ ତାଙ୍କୁ ଯେତିକି ଜାଣିଥିଲି"

ଶ୍ରୀ ଉମେଶ ଚନ୍ଦ୍ର ପଟ୍ଟନାୟକ
( ବିଶିଷ୍ଟ ଆଡ଼ଭୋକେଟ୍ )

ଅନେକ ଦିନ ତଳର କଥା—ମୁଁ ସେତେବେଳକୁ ସ୍କୁଲ ଛାତ୍ର—ମୋର ପିତା ବନମାଳୀ ପଟ୍ଟନାୟକ ଏବଂ ✓ ଚଣ୍ଡେଶ୍ୱର ମିଶ୍ର ଓ ଅନ୍ୟମାନେ ଗୋଟିଏ ଟ୍ରକ୍ ଡାଲାରେ ବସି ବଡ଼ମୁଲ ବଙ୍ଗଳାକୁ ଭେଜି କରିବାକୁ ବାହାରିଲେ—ମୋତେ ଯିବାର ସୁଯୋଗ ମିଳିଥିଲା— ମୋର ପିତା ଏବଂ ଚଣ୍ଡୀବାବୁ ଉଭୟେ ସମଧର୍ମୀ ଓକିଲ । ସେତେବେଳକୁ ରାସ୍ତାଘାଟ ଏତେ ଉନ୍ନତ ହୋଇ ନଥାଏ । ସାଧାରଣତଃ ଫରେଷ୍ଟ ରୋଡ଼ ଯାହା ହୋଇଥାଏ ସେହିଭଳି ରାସ୍ତାର ଦୁଇ କଡ଼ରେ ଥିବା ବାଉଁଶ ବଣ କଣ୍ଟା ସବୁ ବେଳେବେଳେ ଟ୍ରକ ଯାତ୍ରୀମାନଙ୍କ ଦେହରେ ବାଜୁଥାଏ । କାହାର ଗାମୁଛା, ମଫଲର ପ୍ରଭୃତି ସେଇ ଡାଳରେ ଲାଖି ରହି ଯାଉଥିଲା । ବାଟରେ ଖଳଖଳା ଠାରେ ବୃତଙ୍ଗ ନଦୀ ଦେଇ ଯିବାକୁ ହେବ । ନଦୀରେ ବହୁତ ବାଲି । ସମସ୍ତେ ଟ୍ରକ୍‌ରୁ ଓହ୍ଲାଇବାକୁ ପଡ଼ିଲା । ଚଣ୍ଡୀବାବୁ ଓହ୍ଲାଉ ଓହ୍ଲାଉ ଆରମ୍ଭ କଲେ, "ହଇଓ ବନମାଳୀ ବାବୁ ! ସରକାର ଏଠି କାହିଁକି ଏତେ ବାଲି ଜମା କରିଛନ୍ତି କିଓ—ଆମକୁ ଓହ୍ଲାଇବାକୁ ପଡ଼ିଲା ।" ଏ କଥାରେ କୌଣସି ବିଶେଷତ୍ୱ ନ ଥିଲା । ସରକାରଙ୍କର କ'ଣ କିଛି କାମ ନାହିଁ ଯେ ସେ ନଦୀରେ ବାଲି ଗୁଡ଼ିଏ ଆଣି ଜମା କରିବେ । ମାତ୍ର ମୁଁ ଏଇ କଥାଟାକୁ ଖୁବ୍ ଭଲ ପାଇଥିଲି—ମନେ ମନେ ହସିଥିଲି ।

କଲେଜ ଅଧ୍ୟୟନ ସରିଲା । ଆଇନ ଡିଗ୍ରୀ ଧରି କଟକରେ ଓକିଲାତି କରିବାକୁ ସ୍ଥିର କରିଥାଏ । କାରଣ ସେତେବେଳକୁ ମୋର ପିତା ଜୀବିତ ନ ଥିଲେ । କୃଷ୍ଣଚନ୍ଦ୍ର ଶତପଥୀ ଯେ କି ମୋର ପିତାଙ୍କ ଠାରୁ ବୟସରେ ସାନ ଉଭୟେ ଘନିଷ୍ଠ ବନ୍ଧୁ ଥିଲେ । ସେ ମୋତେ କଟକ ଛାଡ଼ି ନୟାଗଡ଼ରେ

ଓକିଲତି କରିବାକୁ ପରାମର୍ଶ ଦେଲେ ଏବଂ ମୁଁ ତାଙ୍କର ଜୁନିୟର ଭାବେ କାମ କଲି । ସେତେବେଳକୁ ନୟାଗଡ଼ରେ ଓକିଲଙ୍କ ସଂଖ୍ୟା ମାତ୍ର ଦଶ ବାର ଜଣ । ସେଇ ଚଣ୍ଡୀବାବୁ—ଡେଙ୍ଗା ହୋଇ ଲୋକଟିଏ, ଗୋରା ତକତକ ଚେହେରା । ଗୋଟିଏ Morr's କାର୍ ଚଳାଇ ବାର୍‌କୁ ଆସନ୍ତି । ଦିନେ ମୋତେ କହିଲେ, "ହଇଓ ! ଏଠି କ'ଣ ଓକିଲାତି କଲ ? କଟକ ଗଲ ନାହିଁ । ଏଠି କ'ଣ ଶିଖିବ ?" ମୁଁ ମନେ କଲି "ଓହୋ—ସତେ ଯେମିତି ତାଙ୍କ ଓକିଲାତି ବେଉସାରୁ ମୁଁ ଭାଗ ନେଇଯିବି । ଏମିତି କାହିଁକି କହିଲେ ? କହିଲେ କହନ୍ତୁ, ମୁଁ ଅଲବତ ଏଇଠି ଓକିଲାତି କରିବି । ମୋ ପିତାଙ୍କ ମହକିଲମାନେ ମୋ ଆଡ଼କୁ ମୁହାଁଇବେ ନାହିଁକି ।" ମୁଁ ଏବେ ଅନୁଭବ କରୁଛି ତାଙ୍କର ସେଇ କଥା କେତେପଦ ଭିତରେ ମୋ' ପ୍ରତି ତାଙ୍କର କେତେ ଶ୍ରଦ୍ଧା ଓ ଆଶୀର୍ବାଦ ନଥିଲା ! ମୁଁ ଏଇଠି କୂପ ମଣ୍ଡୂକ ହୋଇ ରହିବାକୁ ବିଧିର ନିର୍ଦ୍ଦେଶ ଥିଲା ବୋଧହୁଏ—ସେଥିପାଇଁ ତାଙ୍କର ଉପଦେଶକୁ ମୁଁ ଠିକ୍ ରୂପେ ହୃଦୟଙ୍ଗମ କରି ପାରି ନଥିଲି ।

ଏଠି କେତେକ କହିବାର ମୁଁ ଶୁଣିଛି—"ଆରେ ବାବା ! ଚଣ୍ଡୀବାବୁ ଭଳି ଚିଡ଼ା ଲୋକ—ନାଁ ଯେମିତି, ସ୍ୱଭବ ସେମିତି । ଟିକିଏ ରାଗିଗଲେ ମୋକଦ୍ଦମା ନଥି ଫୋପାଡ଼ି ଦେବେ ।" ମାତ୍ର ଏହା ଏକ ଭ୍ରାନ୍ତ ଧାରଣା । ତାଙ୍କ ପାଖରେ ଗରିବ ଓ ଅନେକ ଆଡ଼ୁ ନିରାଶ ହୋଇ ଆସିଥିବା ମହକିଲଙ୍କ ଭିଡ଼ ବେଶୀ । ଆଇନ ବ୍ୟବସାୟରେ ଅର୍ଥ ଉପାର୍ଜନ କରିବା ତାଙ୍କର ଲକ୍ଷ୍ୟ ନଥିଲା । ସେ ରଣପୁର ଗଡ଼ଜାତର ପୂର୍ବତନ ଦେଓ୍ୱାନ—ସେ କ'ଣ ଅର୍ଥ ଉପାର୍ଜନ କରି ନଥିଲେ । ମହକିଲ ତାଙ୍କର ଫିସ୍ ଦେଲା କି ନଦେଲା ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥିଲା । ମୁଁ ନିଜେ ମଧ୍ୟ କ୍ୱଚିତ୍ ଦେଖିଛି ମହକିଲ ତାଙ୍କୁ ସିଧା ସଳଖ ଟଙ୍କା ଦେବାର । ସବୁ କରିବେ ଗୁଣବାବୁ ( ତାଙ୍କର ମୋହରିର ଶ୍ରୀ ଗୁଣନିଧି ପଟ୍ଟନାୟକ, ଅଦ୍ୟାବଧି କାର୍ଯ୍ୟ କରୁଛନ୍ତି ) । ଟଙ୍କା ଓ ହାଜିରା ଆଦି ନେଇ ଚୁପ୍ ଚୁପ୍ କଣ କହି ଚଣ୍ଡୀବାବୁଙ୍କୁ ବଢ଼ାଇ ଦେବେ । ମହକିଲ ଠିକ୍ ସମୟରେ ନ ଆସିଲେ ସେ ବିରକ୍ତ ହୁଅନ୍ତି । ମାତ୍ର ସେଇ ରାଗଟା ଝଡ଼େ ଗୁଣବାବୁଙ୍କ ଉପରେ ; କିନ୍ତୁ ମୋକଦ୍ଦମା ଛାଡ଼ିଦେବା ବ୍ୟକ୍ତି ନୁହନ୍ତି ସେ । ଗୁଣବାବୁଙ୍କୁ ପଚାରିଲେ ସେ କହନ୍ତି, "ଓକିଲ ଓ ମୋହରିର ସମ୍ପର୍କ ସ୍ୱାମୀ ସ୍ତ୍ରୀର ସମ୍ପର୍କ ଭଳି । ଏଥିରେ ଦୁଃଖିତ ହେବାର କିଛି ନାହିଁ ।"

ଦିନକର କଥା କହୁଛି—ଗୋଟିଏ ଦେଓ୍ୱାନୀ ମୋକଦ୍ଦମା ଶୁଣାଣି ପାଇଁ ଧାର୍ଯ୍ୟ ହୋଇଥାଏ—ତାଙ୍କର ମହକିଲ ଆସି ନଥାଏ—ଗୁଣବାବୁ ମହକିଲର

ଦେହ ଅସୁସ୍ଥ ଜଣାଇ ଦରଖାସ୍ତ ଦାଖଲ କରି ଚୁପ୍‌ଚାପ ଚଣ୍ଡୀବାବୁଙ୍କ ପଛକୁ ଠିଆ ହୋଇଥାନ୍ତି । ହାକିମ ଦରଖାସ୍ତଟା ପାଠ କରି ଦେଇ ଆରମ୍ଭ କରି ଦେଲେ—"ହଁ ମକଦ୍ଦମାଟିଏ କରି ଦେଇ ତାର ସେ ଗାଁରେ ହଳ ବୁଲଉ ଥିବ—ଠିକ୍ ମୋକଦ୍ଦମା ଶୁଣାଣି ବେଳକୁ ଜର ହୋଇଯିବ—ନା ଆଜି ସାକ୍ଷୀ ନ ଦେଲେ ମୋକଦ୍ଦମା ଡିସ୍‌ମିସ୍ କରିବି ।" ମୁଁ ମନେ ମନେ ଭବୁଥାଏ ଆଜି ବୋଧହୁଏ ଏ ମୋକଦ୍ଦମା ଡିସ୍‌ମିସ୍ ହୋଇଯିବ । ମାତ୍ର ଚଣ୍ଡୀବାବୁ ତିଳେମାତ୍ର ବିଚଳିତ ନ ହୋଇ କହିଲେ—"ମୋର ସାକ୍ଷୀ ଦେବା ଆବଶ୍ୟକ ନାହିଁ—ଯଦି ଅପରପକ୍ଷ ସାକ୍ଷୀ ଦେବେ ଦିଅନ୍ତୁ—ମୁଁ ତାଙ୍କୁ ଜେରା କରିଦେବି ।" ମାତ୍ର ଅପରପକ୍ଷ ଓକିଲ ମଧ୍ୟ ଜବାବ ଦେଲେ "ଯଦି ବାଦୀ ତରଫ ସାକ୍ଷୀ ନ ଦେବେ ତେବେ ଆମ ତରଫରୁ ମଧ୍ୟ ଆମେ ସାକ୍ଷୀ ଦେବୁନାହିଁ ।" ତାପରେ କେବଳ ଅର୍ଜୀ ଏବଂ ଜବାବ ଉପରେ ମୋକଦ୍ଦମା ଆର୍ଗୁ୍ୟମେଣ୍ଟ ଚାଲିଲା ଅନେକ ସମୟ ଧରି—ବାଃ, କି ସୁନ୍ଦର ଆର୍ଗୁ୍ୟମେଣ୍ଟ—ଆଇନର କି ସୁନ୍ଦର ତର୍ଜ୍ଜମା—ଚଣ୍ଡୀବାବୁ ମୋକଦ୍ଦମାରେ ଜିତିଲେ—ଆଜିକାଲି ସେ ପ୍ରକାର ଆର୍ଗୁ୍ୟମେଣ୍ଟ ଦୁର୍ଲଭ—ବର୍ତ୍ତମାନର ଯୁବ ଓକିଲ ବନ୍ଧୁମାନେ ଆଇନ ବହିଠାରୁ ଦୂରେଇ ରହୁଛନ୍ତି—ବୋଧହୁଏ ଏ ଆଇନ ବହିରେ କିଛି ଆଇନ ପାଠ ନାହିଁ—ଶାଠରେ ସବୁ ଅଛି—ମାତ୍ର ଚଣ୍ଡୀବାବୁ ଶାଠର ଧାର ଧାରନ୍ତି ନାହିଁ କିମ୍ବା କୌଣସି ହାକିମଙ୍କ ପ୍ରୀତିଭାଜନ ହେବା ପାଇଁ 'ତେଲ ମାଲିସ' କରିବା ମୁଁ ଦେଖିନାହିଁ—ସେ ଥିଲେ ବଡ଼ ସ୍ପଷ୍ଟବାଦୀ—ନିର୍ଭୀକ ।

ଆଉ ଦିନକର କଥା—ମୋର ଓକିଲାତି ପ୍ରାୟ ପାଞ୍ଚ ବର୍ଷ ହୋଇଯାଇଥାଏ—ଚଣ୍ଡୀବାବୁ କ'ଣ ଗୋଟାଏ ଦେଓ୍ୱାନୀ ମୋକଦ୍ଦମାରେ ଆର୍ଗୁ୍ୟମେଣ୍ଟ କରୁଥାନ୍ତି—ମୁଁ ମୂଳରୁ ଶେଷ ପର୍ଯ୍ୟନ୍ତ ଶୁଣିଲି ମୋର କିଛି ହୃଦୟଙ୍ଗମ ହେଲାନାହିଁ । ଆର୍ଗୁ୍ୟମେଣ୍ଟ ସରିବା ପରେ ସଙ୍କୋଚ ନ କରି ପଚାରିଲି—"ଆଜ୍ଞା ! କ'ଣ ସବୁ କହିଲେ କିଛି ବୁଝି ପାରିଲି ନାହିଁ"—ସେ ହସି ହସି ମୋତେ କହିଲେ—"ହଉ ବୁଝିବ, ବୁଝିବ—ତୁମେ ଦେଓ୍ୱାନୀ କାର୍ଯ୍ୟବିଧି ଆଇନର ଅମୁକ ଅମୁକ ଦଫାଗୁଡ଼ିକ ପଢ଼ି ମୋତେ କାଲି କହିବ ।" ମୁଁ ତାଙ୍କ କଥାନୁସାରେ ପଢ଼ିଲି ଏବଂ ତାଙ୍କର ସମସ୍ତ ଆର୍ଗୁ୍ୟମେଣ୍ଟ ମୋର ବୋଧଗମ୍ୟ ହୋଇଗଲା । ପ୍ରକୃତରେ ଅତି ଉଚ୍ଚକୋଟୀର ଓକିଲ ଥିଲେ ଚଣ୍ଡୀବାବୁ ।

ନୟାଗଡ଼—ପୂର୍ବତନ ଗଡ଼ଜାତ-ନୟାଗଡ଼ର ରଜା ମୋକଦ୍ଦମା ବୁଝୁଥିଲେ—ତାପରେ ଏସ୍. ଡ଼ି. ଓ., ମାଜିଷ୍ଟ୍ରେଟ୍ କିମ୍ବା ମୁନସିଫ ପ୍ରାୟ ସବୁ

ମୋକଦ୍ଦମା ବିଗ୍ଭର କରୁଥିଲେ । ସେମାନଙ୍କର ବିଗ୍ଭର ପଦ୍ଧତି ତାଙ୍କ ନିଜ ନିଜ ମର୍ଜି ଉପରେ ନିର୍ଭର କରୁଥିଲା---ଚଣ୍ଡୀବାବୁ ରଣପୁରର ଦେଓ୍ୱାନ ଥିଲେ— ପ୍ରଜା ଆନ୍ଦୋଳନ ସମୟରେ ରଣପୁର ଛାଡ଼ି ନୟାଗଡ଼ରେ ଓକିଲାତି ଆରମ୍ଭ କଲେ । All India Reporter, Criminal Law Journal ପ୍ରଭୃତି ପଢ଼ି ହାକିମମାନଙ୍କ ଆଗରେ ତର୍ଜମା କରିବା ଆରମ୍ଭ କଲେ—ସେଇଠୁ ପ୍ରତିପକ୍ଷ ଓକିଲମାନଙ୍କର ଆଇନର Journal କିଣି ତର୍ଜମା କରିବା ଆରମ୍ଭ ହେଲା ।

ଚଣ୍ଡୀବାବୁ ଦିନେ ବାର୍‌ରୁମ୍‌ରେ ବସି ଅନ୍ୟ ବନ୍ଧୁମାନଙ୍କ ସହ ଆଳାପ କରୁଥାନ୍ତି । ଜଣେ କିଏ ମହକିଲ ଆସି ସେଇଠି ସମ୍ବାଦ ଦେଲା—"ଆଜ୍ଞା, ଆଜି ବଜାରକୁ ଖୁବ୍ ବଢ଼ିଆ ଖଡ଼ା ଶାଗ ଆସିଛି—ସେ ଲୋକ କହୁଥିଲା ରଣପୁରଆଡ଼ୁ ସେ ଖଡ଼ା ବିକ୍ରୀ କରିବାକୁ ଆଣିଛି ବୋଲି"—ଚଣ୍ଡୀବାବୁ କହିଲେ, "ପ୍ରକୃତରେ ଆମ ରଣପୁର ଖଡ଼ାଗୁଡ଼ିକ ଭରି ମୋଟା ଏବଂ ସୁସ୍ୱାଦୁ......" ତାଙ୍କ କଥା ସେତିକିରେ ରହିଛି କୃଷ୍ଣବାବୁ ସଙ୍ଗେ ସଙ୍ଗେ କହିଲେ, "ହଁ ! ବୁଝିଲ ଦାଦା, (କୃଷ୍ଣବାବୁ ଥଟ୍ଟାରେ ଚଣ୍ଡୀବାବୁଙ୍କୁ 'ଦାଦା' ଅର୍ଥାତ୍ ଯେଉଁମାନେ ଗଞ୍ଜେଇ ବିକ୍ରୀ କରନ୍ତି ଏଇ ଅର୍ଥରେ) ମୁଁ ସେଦିନ ତୁମ ଘରକୁ ଯାଇଥିଲି । ତୁମ ଗ୍ଭତଳୁ ଅନାଇଲି—ସେଥିରେ ଯେଉଁ କଡ଼ି, ବରଗା ସବୁ ଲାଗିଛି ସେଗୁଡ଼ାକତ ଶାଳ, ପିଆଶାଳ କିମ୍ବା ଶିଶୁକାଠର ନୁହେଁ—ହେଲା, ହେଲା ଏଥର ବୁଝିଗଲି—ସେଗୁଡ଼ାକ ସେଇ ରଣପୁର ଖଡ଼ାରେ ତିଆରି ହୋଇଛି ।" ଚଣ୍ଡୀବାବୁ ଇଷତ୍ ହସି ସଙ୍ଗେ ସଙ୍ଗେ ଉତ୍ତର ଦେଲେ—"କାହିଁକି ସେଗୁଡ଼ା (ଅର୍ଥାତ୍ ଅଫିମ) ଏତେ ଖାଉଛ ? ଏଠି ଆସି ବାରରୁମ୍‌ରେ ଘୁମଉଛ ? ତୁମକୁ ସେଗୁଡ଼ା ଖଡ଼ାରେ ହୋଇଛି ବୋଲି ଦିଶିଲା ।" କି ସୁନ୍ଦର repartee—କି ଉପସ୍ଥିତ ବୁଦ୍ଧି—ମୁଁ ସେଦିନ ତ ଖୁବ୍ ହସିଥିଲି—ସେଇ କଥା ମନେପକାଇ, ଦୋହରଇ ଅନ୍ୟମାନଙ୍କୁ ମଧ୍ୟ ହସାଇଛି ।

'ନୟାଗଡ଼ ସମ୍ମିତି ସଂସଦ' ତରଫରୁ ଏଠାରେ ପ୍ରତିବର୍ଷ ଜାନୁୟାରୀ ଫେବୃୟାରୀ ବେଳକୁ ନିଶ୍ଚୟ ଗୋଟିଏ ନାଟକ ମଞ୍ଚସ୍ଥ ହେବ -ରଣପୁରର ଶିକ୍ଷକ ପ୍ରଖ୍ୟାତ ନାଟ୍ୟକାର ଶ୍ରୀଯୁକ୍ତ ନୀଳକଣ୍ଠ ମିଶ୍ରଙ୍କର ଗୋଟିଏ ନାଟକ 'ଖଇକଉଡ଼ି' ଏଠାରେ ମଞ୍ଚସ୍ଥ କରଯାଉଥାଏ । ସମ୍ମିତି ସଂସଦର ସଭ୍ୟ ଭାବରେ ମୋତେ ନାଟକର କିଛି ନା କିଛି ଅଂଶ ଗ୍ରହଣ କରିବାକୁ ପଡ଼ିବ । ମୋର ସମୟାଭାବରୁ ମୁଁ ନାଟକର ଗୋଟିଏ ହାସ୍ୟରସାତ୍ମକ 'ଆପଲସ୍ୱାମୀ' ଭୂମିକାରେ ଅବତୀର୍ଣ୍ଣ

ହୋଇଥିଲି । ଏଇଟି ଗୋଟିଏ ଦୃଶ୍ୟ ମାତ୍ର ଏବଂ ଏକ ଅନାବଶ୍ୟକ ଭୂମିକା । ମୁଁ ଶୁଣିଛି କଟକ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଏହି ଭୂମିକାଟିକୁ ବାଦ ଦିଆଯାଇ-ଥିଲା । ଭୂମିକର ବିଶେଷତ୍ୱ କିଛି ନାହିଁ ମାତ୍ର ମୋ ପାଇଁ ବଡ଼ ଅଖାଡ଼ୁଆ ଥିଲା—ନାଟକର ଦ୍ୱିତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ମୋର ଭୂମିକା ପଡ଼ିବ—ନାଟକର ସମସ୍ତ କଳାକାରମାନଙ୍କୁ ପେଣ୍ଟିଂ କରି ସାରିବା ପରେ ବାକି ସମୟ-ତକ କଟକର ଶ୍ରୀକୃଷ୍ଣ ଚିତ୍ରାଳୟ ପେଣ୍ଟରମାନେ ମୋ ଦେହ, ମୁହଁ କଳା ବୋଳି, ଥୋଡ଼ିରେ ଈଷତ୍ ନାଲି ଧଳା ମିଶ୍ରିତ ରଙ୍ଗ ଦେଇ, କପାଳରେ ମୋଟା ଧଳାର ରମାନନ୍ଦୀ ତିଳକ, ମୁହଁରେ ନିମ୍ନମୁଖୀ ମୋଟା ନିଶ, ଗ୍ରୀବାରେ ଧଳା ପଇତା, ପିନ୍ଧିବାକୁ ଧଳା ଲୁଙ୍ଗି ଏବଂ କାନ୍ଧରେ ଧଳା ଗାମୁଛା ପକାଇ ମୋତେ ଏକ ଦକ୍ଷିଣିଆ ଖାତକ ଭୂମିକାରେ ବାହାରିବା ପାଇଁ ଉପଯୋଗୀ କରିଦେଇ ଥାନ୍ତି—ଚଣ୍ଡୀବାବୁ କୌଣସି ସୂତ୍ରରୁ ଖବର ପାଇଗଲେ ମୁଁ ସେ ନାଟକରେ ଅଂଶ ଗ୍ରହଣ କରିଛି—ସେଇତକ ଦେଖିବା ପାଇଁ ଚଣ୍ଡୀବାବୁ ପ୍ରେକ୍ଷାଳୟର ସବା ଆଗ ଧାଡ଼ିରେ ଆସ୍ଥାନ ଜମାଇ ବସି ଯାଇଥାନ୍ତି । ନାଟକର ସମାପ୍ତି ପରେ ସେ ମୋତେ ଅଭିନନ୍ଦନ ତଥା ଆଶୀର୍ବାଦ ଜଣାଇ ଫେରିଲେ । ଦର୍ଶକମାନଙ୍କ ମତରେ ସେଇ ନାଟକରେ ମୁଁ ସର୍ବଶ୍ରେଷ୍ଠ କଳାକାର ବୋଲି ପ୍ରଶଂସିତ ହୋଇଥିଲି । ତାପରେ କଚେରୀ ବାରଣ୍ଡାରେ ମୁହାଁମୁହିଁ ଭେଟ ହୋଇଗଲେ ମୋତେ କହନ୍ତି—"କିସ ହେ ଆଆପଲସ୍ଥଆମି ! ଆଜି କିଅଣ ଏତେ ମଠ ହେ !" ମୁଁ ଲାଜରେ ହସିଦିଏ ।

ଚଣ୍ଡୀବାବୁ ସନ ୧୯୬୬ ମସିହାରେ ନୟାଗଡ଼ ବାର୍ ଆସୋସିଏସନର ପ୍ରେସିଡେଣ୍ଟ ଥାଆନ୍ତି ଏବଂ ଶ୍ରୀଯୁକ୍ତ ବ୍ରଜକିଶୋର ମହାନ୍ତି ଆଡ଼ଭୋକେଟ୍ ଏବଂ ପୂର୍ବତନ ବିଗ୍ରର ବିଭାଗୀୟ ମାଜିଷ୍ଟ୍ରେଟ୍ ଏହାର ସମ୍ପାଦକ ଥାଆନ୍ତି । ବ୍ରଜବାବୁ କଲେଜରେ ମୋର ଗୋଟିଏ ବର୍ଷ ସିନିୟର ଏବଂ ଘନିଷ୍ଠ ବନ୍ଧୁ । ଏଭଳିକି ରେଭେନ୍ସା କଲେଜରେ ଏମ୍. ଏ. ପଢ଼ିଲା ବେଳେ ଏକା ଖଟରେ ଶୟନ କରିଛୁ । ସେ ଟିକିଏ ଟିକିଏ କଥାରେ ରାଗିଯାଇ ପାଟିତୁଣ୍ଡ କରନ୍ତି—ସେଥିପାଇଁ ତାଙ୍କୁ ରଗେଇବାକୁ ମୋତେ ଖୁବ୍ ଭଲ ଲାଗେ । ମାତ୍ର ତାଙ୍କ ପ୍ରତି ମୋର କୌଣସି ଅସୂୟାଭାବ କେବେ ନଥିଲା କିମ୍ବା ନାହିଁ । ସେଠି ଅନ୍ୟ ଓକିଲମାନଙ୍କ ମଧ୍ୟରେ ଅନ୍ୟ ସମସ୍ତେ ମୋଠାରୁ ବହୁତ ସିନିୟର ହୋଇଥିବାରୁ ସେମାନଙ୍କୁ ଭକ୍ତି କରିବାଛଡ଼ା ଥଟ୍ଟା କରିବା ଦୁଃସାହସ କେବେ ମୁଁ କରି ନଥିଲି । ଅବଶ୍ୟ ସେତେବେଳକୁ ମୋ ପରେ ପରେ ଅନେକ ଓକିଲ ନୟାଗଡ଼ ବାର୍‌ରେ ଯୋଗଦେଇ ସାରିଥିଲେ । ବାରର ସଭ୍ୟଚାନ୍ଦା ମାସିକ ଏକଟଙ୍କା ମାତ୍ର—

କିନ୍ତୁ ଅଧିକାଂଶ ସିନିୟର ଓକିଲ ସେ ଗ୍ରନ୍ଦା ଦେଇ ନଥାନ୍ତି --ଅବଶ୍ୟ ଇଚ୍ଛାକୃତ ନୁହେଁ । ସେଥିପାଇଁ ବ୍ରଜବାବୁ ବାର୍ ରୁମ୍‌ରେ ଦିନେ ବହୁତ ପାଟିତୁଣ୍ଡ କଲେ ଏବଂ ସିନିୟର ଓକିଲମାନେ ଏଥିପାଇଁ ଦାୟୀ ବୋଲି କହି ଯେଉଁମାନେ ଗ୍ରନ୍ଦା ଦେଇ ନଥିବେ ସେମାନେ ଓକିଲ ସଂଘ ନିର୍ବାଚନରେ ଭାଗ ନେଇ ପାରିବେ ନାହିଁ ବୋଲି କହିଲେ । ଏହି ସାମାନ୍ୟ ବିଷୟ ନେଇ ଓକିଲ ସଂଘ ଦୁଇଭାଗ ହୋଇଗଲା—ମାତ୍ର ଏଇଟା ଅଳ୍ପ କିଛିଦିନ ପାଇଁ । ମୁଁ ବି ସଭ୍ୟଗ୍ରନ୍ଦା ଦେଇ ନଥାଏ । ମୋ ଦ୍ୱାରା କବିତା ରଚନା ଏକ କଷ୍ଟକର ବ୍ୟାପାର ଥିଲା—ମାତ୍ର କେବଳ ବ୍ରଜବାବୁଙ୍କୁ ଚିଡ଼ାଇବା ପାଇଁ ସେତେବେଳେ ଇଆଡୁ ସିଆଡୁ କିଛି ଲେଖି ତାର ନାମ "ବରଜ ବୋଲି" ବା ବରଜ "ବିଗ୍ରର" (ଯେପରି "ବଜାର ବୋଲି'—ବ'ରେ ଆରମ୍ଭ) ଦେଇଥିଲି ତାର କିୟଦଂଶ ଏହି ପ୍ରକାର :

ବନ୍ଦଇ ବାର ବାର ବାର ମେମ୍ବରେ
ବର୍ଣ୍ଣିବି ଅଧ୍ୟାୟେକ ବରଜ ବରେ ।।
ବରଜବର ଜବର ବର୍ବର ଏହି
ବଜର ବଜର ତବେ ମହି କମ୍ପାଇ ।।

× × ×

ବିଗଟ ବଟବୃକ୍ଷ ଗ୍ରୁପ୍ସରେ ବୁଲି
ବାଦାମ ଭଜି ଖାଇ ଫେରଟି ଖାଲି ।।
ବିରିବିରି ବଦନ ଦେଖିଲେ ପକ୍ଷ
ବଡ଼ା ପଇସା ଆଗ ଦିଅକି ଡ଼ାକ ।।

× × ×

ବର୍ଡ଼ିଲା ବେଲୁଁ ବେଳ ଲଞ୍ଚ ଅନୀତି
ବିଗ୍ରର ନାହିଁ କହିଲେ ବି ଦୁର୍ଗତି ।।
ବାଜିଶ୍ଚିଣ୍ଡା ଖପର ଡିଆଁ ଯା ନୀତି
ବାହ୍ୱାସ୍ଫୋଟ ମାରି ସେ ବ୍ରଜ ମହାନ୍ତି ।।
ବୋଲନ୍ତି ବରଜିବି ସବୁ ଦୁର୍ନୀତି
ବିକଟ୍ରେ ମୋ' ନାମରେ ପାଳିବ କୁତ୍ତି ।।

× × ×

ବଡ଼ ଗ୍ରୀଷମ କାଳ ଅସଲ ଖର
ବିନା ମେଘେ କି ବଜ୍ରପାତ ହୋଇଲା ।।

ବାର୍ ମେମ୍ବରେ ପ୍ରସ୍ତାବିଲେ ଅନାସ୍ଥା
ବାବା ବରଜଙ୍କର ଦେଖ ଅବସ୍ଥା ।।
ବାଡ଼ାଇ ଟେବୁଲକୁ ବଡ଼ ପାଟିରେ
ବୁଡ଼ା ବୁଢ଼ାଙ୍କୁ ବକିବାରେ ମାତିଲେ ।।
ବୋଲନ୍ତି ହାଇକୋର୍ଟେ କରିଣ ରିଟି
ବାରିଯାକ ବାହାର କରି ଦେବିଟି ।।
ବଡ଼ ନ୍ୟାୟାଧୀଶଙ୍କୁ ସବୁ କହିବି
ବ୍ର. କି. ମହାନ୍ତି ଯଦି ମୁଁ ହୋଇଥିବି ।।
ବଡ଼ ବଡ଼ କାଗଜେ ବାହାର କରି
ବାର ଗୁମର ଯାକ ଦେବି ମୁଁ ଖୋଲି ।।
ବାଳକପଗ ମୋତେ ଅଛନ୍ତି ମଣି
ବାଜିମାରି କହୁଛି ରଖିଥା ଜାଣି ।।
ବିକିବି ଜମିବାଡ଼ି ଯେତେକ ଥିବ
ବାଟିଆ ଲଗାଇବି ଏକଥା ଧ୍ରୁବ ।। (କଲଙ୍କ)

ବୈଧାନିକ ବିଷୟେ ହୋଇଲେ ହାର
ବିଷ ଖାଇ ମରିବି ଏକଥା ସାର ।।
ବାବା ଆଜି ବୋଲଇ ଭଇ ହେ ଶୁଣ (ବାବା + ଆଜି = ବାବାଜି)
ବଡ଼ ବିଷମ ହେଲ ଏ ଅଘଟଣ ।।
ବଇବ୍ ବାହାର ମୁଁ ନୁହଁଇ କେବେ
ବିଗ୍ରହ କର ମୋହ କଥାକୁ ଲବେ ।।
ବାସ କଥା ବଜାରେ ଯେବେ ବୋଲିବା
ବାସ ନୋହିବ ପୁରୁଷକୁ ଦହିବା ।।
ବାରେ ମୋ' ନାହିଁ ଦୋଷ ଏହି ବିଗ୍ରହରେ
ବର୍ଣ୍ଣିଲି ଯାହା ସବୁ ଚଣ୍ଡୀଙ୍କ ବରେ ।। (ଚଣ୍ଡୀବାବୁ)

ଏହି ରଚନାର ସାହିତ୍ୟିକ ମୂଲ୍ୟ କିଛି ନାହିଁ ଏବଂ ଏଇଟା ଚଣ୍ଡୀବାବୁଙ୍କ ଆଶୀର୍ବାଦରୁ ଲେଖିଲି କହି ମୋର ଅନ୍ୟାନ୍ୟ ସିନିୟର ଓ ଜୁନିୟର ବନ୍ଧୁମାନଙ୍କୁ ଏପରିକି ବନ୍ଧୁ ବ୍ରଜବାବୁଙ୍କୁ ପାଖରେ ବସାଇ ସିଗାରେଟ୍ ଖୁଆଇ ଶୁଣାଇ ଥିଲି, ତାପରେ ବ୍ରଜବାବୁଙ୍କ ସହ ମୋର ବନ୍ଧୁତ୍ୱ ବଢ଼ିଛି ସିନା କମି ନାହିଁ । ମାତ୍ର ଚଣ୍ଡୀବାବୁ ଏଇଟି ଶୁଣି ଏତେ ଆନନ୍ଦିତ ହୋଇଥିଲେ ଯେ ସେ ତାଙ୍କର ଅବସର ସମୟରେ ବେଳେ ବେଳେ ମୋତେ ପାଖରେ ଡାକି କହନ୍ତି, "ବାବାଜୀ, ସେଇ

'ବରଜ ବୋଲି'ଟା ଟିକିଏ ଆରମ୍ଭ କର ଶୁଣିବା ।" ମୋର ଆଜି ସେଇକଥା ମନେ ପଡ଼ୁଛି ।

ସନ୍ ୧୯୬୮ ମସିହାରେ ନୟାଗଡ଼ରେ ସବ୍‌ଜଜ୍ କୋର୍ଟ ଉଦ୍‌ଘାଟିତ ହେଲା । ମାତ୍ର ଚଣ୍ଡୀବାବୁ ଶାରୀରିକ ଅକ୍ଷମତା ଯୋଗୁ ଆଉ ଆସିପାରୁ ନଥାନ୍ତି । ମୁଁ ସେତେବେଳେ ନୟାଗଡ଼ ଓକିଲ ସଂଘର ସେକ୍ରେଟାରୀ ଥାଏ । ଚଣ୍ଡୀବାବୁ, ଯାହାଙ୍କର ପ୍ରେରଣା, ଉତ୍ସାହ ଯୋଗୁ ନୟାଗଡ଼ରେ ଏଇ ସବ୍‌ଜଜ କୋର୍ଟ ପ୍ରତିଷ୍ଠିତ ହୋଇ ପାରିଲା ସେ ନ ଆସିଲେ ସବୁ ଯେମିତି ଅପୂର୍ଣ୍ଣ ରହିଯିବ— ସେଇଆ ଭାବି ତାଙ୍କୁ ନିଜେ ଯାଇ ନେଇ ଆସିଲି । ସେ ଯେଉଁ ଆନନ୍ଦ ପ୍ରକାଶ କରିଥିଲେ ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

ତାଙ୍କର ରୁଗ୍‌ଣାବସ୍ଥାରେ ମୁଁ ଯାଇ ତାଙ୍କର ଦର୍ଶନଲାଭ କରିଥିଲି । ସେଇ ହସହସ ମୁହଁ ଏବଂ ବାତ୍ସଲ୍ୟସ୍ନେହ ଭୁଲି ପାରୁନାହିଁ । ମୁଁ ଆଜି ଯାହା କିଛି ହୋଇଛି—ବୋଧହୁଏ ତାଙ୍କର ଆଶୀର୍ବାଦ ମୋ ପ୍ରତି ରହିଥିଲା । କାଲିପରି ଲାଗୁଛି ଏଭିତରେ ଏକବିଂଶ ବର୍ଷ ବିତି ଗଲାଣି, ତାଙ୍କଭଳି ପୁଣ୍ୟାତ୍ମା ମହାପୁରୁଷଙ୍କର ଚରଣ ତଳେ ମୋର ଶ୍ରଦ୍ଧାଞ୍ଜଳି ଜଣାଇବାର ସୁଯୋଗ ପାଇଥିବାରୁ ମୁଁ ନିଜକୁ ଧନ୍ୟ ମନେକରୁଛି ।

ତା ୩୦ । ୧୦ । ୯୦
ଉମେଶ ଚନ୍ଦ୍ର ପଟ୍ଟନାୟକ
ନୟାଗଡ଼



# ଇତିହାସର କବନ୍ଧ

ଦୁର୍ଗାମାଧବ ମିଶ୍ର

[ ବାସ୍ତବ ଇତିହାସ ସହ କୌଣସି ସମ୍ପର୍କ ନଥାଇ ମୁଷ୍ଟିମେୟ ବ୍ୟକ୍ତି ନିଜର ସ୍ୱାର୍ଥ ସାଧନ ନିମନ୍ତେ ଇତିହାସକୁ ବିକୃତ କରୁଥିବାର ଦୃଷ୍ଟାନ୍ତ ସମ-ସାମୟିକ ସୁବିଧା ରାଜନୀତିରେ କିଛି କମ୍ ନୁହେଁ । ଏହି ପରିପ୍ରେକ୍ଷୀରେ ବିଭ୍ରାନ୍ତିକର ଅପପ୍ରଚାରର ଶିକାର ହେଉଥିବା ଜଣେ ସଚ୍ଚା ଦେଶସେବୀ ରଣପୁର ଇଷ୍ଟେଟ୍‌ର ପୂର୍ବତନ ଆସିଷ୍ଟାଣ୍ଟ ଦେବାନ ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କ ସମ୍ବନ୍ଧରେ ଏହି ପ୍ରବନ୍ଧ ]

ବିଶ୍ୱ ଇତିହାସରେ ସ୍ୱାର୍ଥପର ଭାବେ କିଛି ଲୋକ ବା ଗୋଷ୍ଠୀ ନିଜର ନୈତିକ ବୁନିଆଦି ପ୍ରତିଷ୍ଠା କରିବା ପାଇଁ ଇତିହାସକୁ ଓଲଟପାଲଟ କରି ନୂଆ କରି ଲେଖାଇ ଅନ୍ୟ କେତେକ ବାସ୍ତବ ପ୍ରତିଭବାନ ବ୍ୟକ୍ତିଙ୍କ ଚରିତ୍ର ସଂହାର କରିବାର ଦୃଷ୍ଟାନ୍ତ ଅନେକ ରହିଛି । ନିକଟ ଅତୀତରେ ଅ◌ ◌ନ, ସାର୍ତ୍ତେ, କ୍ୟାମୁ ଓ◌ ◌ାଲଡ୍ ହେମ୍‌ଙ୍କ ପରି ବିଶିଷ୍ଟ ଚିନ୍ତାନାୟକମାନଙ୍କୁ 'ନାଜି ◌ ଫାସି' ରାଜନୀତିର ସମର୍ଥକ ବୋଲି ଦ୍ୱାହି ଦେଇ ସେମାନଙ୍କ ସାମାଜିକ ସ୍ୱୀକୃ◌ ଓ ପ୍ରତିଭାକୁ ମ୍ଳାନ କରିବାକୁ ଉଦ୍ୟମ କରାଯାଇଛି । ଋଷ ଓ ଚୀନରେ ଇ◌ ◌ାସ ପର୍ଦ୍ଦ ବାରବାର ଚିରା ହୋଇ ନୂଆ ଭାବରେ ଲେଖା ଯାଉଥିବାର ନଜିର ର◌ ◌ଛି ।

ଆମ ସ୍ୱାଧୀନତା ସଂଗ୍ରାମର ବାସ୍ତବ ପଟ୍ଟଭୂମିରେ ଅବତୀର୍ଣ୍ଣ ହୋଇ-ଥିବା ବହୁ ସଚ୍ଚା ସଂଗ୍ରାମୀ, ଜନନାୟକ ଓ କର୍ମୀ ଏବେ ଆଉ ନାହାନ୍ତି । ସେମାନଙ୍କ ମଧ୍ୟରୁ ଖୁବ୍ କ୍ୱଚିତ ଅଙ୍ଗେ ନିଭେଇଥିବା କଥା ଲିପିବଦ୍ଧ କରିଛନ୍ତି । ଦୁର୍ଭାଗ୍ୟବଶତଃ ରଣପୁରର ପ୍ରଜା ଆନ୍ଦୋଳନ, ମେ◌ ◌ ବେଜେଲ୍‌ଗେଟ୍

ନିଅନ ଏବଂ ରଘୁ ଓ ଦିବାକରଙ୍କର ଫାସି ଦଣ୍ଡ ସମ୍ପର୍କରେ ନିର୍ଭରଯୋଗ୍ୟ ଐତିହାସିକ ତଥ୍ୟ ଏପର୍ଯ୍ୟନ୍ତ ମିଳିନାହିଁ ଏବଂ କୌଣସି ସତ୍ୟନିଷ୍ଠ ଅନୁଭୂତିର ବିବରଣୀ କେହିହେଲେ ଲେଖିଯାଇ ନାହାନ୍ତି । ଗତ ଦଶ ବାର ବର୍ଷ ମଧ୍ୟରେ ସ୍ୱାଧୀନତା ସଂଗ୍ରାମର ସମ୍ପୂର୍ଣ୍ଣ ଅର୍ବାଚୀନ କିଛି ଲୋକ ହଠାତ୍ 'ଦେଶ ପ୍ରେମୀ'ର ନୀଳବର୍ଣ୍ଣ ଶୃଗାଳର ବସ୍ତ୍ର ପିନ୍ଧି କପୋଳକଳ୍ପିତ କିଛି ଜୀବନୀ ବା ନାଟକ ଲେଖାଲେଖି କରି ନିଜକୁ ତଥା ନିଜର ପିତା, ବନ୍ଧୁ ପରିବାର ଲୋକଙ୍କୁ ରଣପୁର ପ୍ରଜା ଆନ୍ଦୋଳନର ନାୟକ ଓ ସଂଗ୍ରାମୀ ପ୍ରବକ୍ତା ରୂପେ ଅଧିଷ୍ଠିତ କରିବାକୁ ପ୍ରୟାସ କରିଛନ୍ତି । ଏପରିକି ବ୍ରିଟିଶ୍ ସରକାର ବିରୁଦ୍ଧରେ ପ୍ରଜା ଆନ୍ଦୋଳନ ବେଳେ ତସ୍କର ଭଳି ଲୁଚି ଲୁଚି ବୁଲୁଥିବା ଓ ଗ୍ରାମର ପଡ଼ୋଶୀ ଓ ପ୍ରଜାଙ୍କୁ ଜମିଜମା ଲୁଣ୍ଠନ ଓ ବହୁଭବରେ ସନ୍ତାପିତ କରୁଥିବା କେଇଜଣ କୁଟିଳ ସ୍ୱଭବର ବ୍ୟକ୍ତି ହଠାତ୍ ଏବେ ଜୀଅନ୍ତା ଶହୀଦ୍ ସାଜି ନିଜପକ୍ଷ ସମର୍ଥନ କରି ଜୀବନୀ ଓ ନାଟକ ଲେଖାଇ ମଞ୍ଚସ୍ଥ କରୁଛନ୍ତି । ମୋର ପିତା ଶ୍ରୀ ଚଣ୍ଡେଶ୍ୱର ମିଶ୍ର ରଣପୁର ପ୍ରଜା ଆନ୍ଦୋଳନ ସମୟରେ ଆସିଷ୍ଟାଣ୍ଟ ଦେଓ୍ୱାନ ଥିଲେ । ତାଙ୍କର ଦେହାନ୍ତ ହେବାର ପ୍ରାୟ ପନ୍ଦର ବର୍ଷ ପରେ ମୁଁ ପୁରୁଣା ଫାଇଲପତ୍ରରୁ ଖଣ୍ଡେ ଚିଠି ପାଇଲି ଯେଉଁଥିରେ ବେଜେଲ୍‌ଗେଟ୍‌ଙ୍କ ହତ୍ୟା ସମ୍ବନ୍ଧୀୟ ପରିସ୍ଥିତି ପାଇଁ ଦାୟୀ କରି ବ୍ରିଟିଶ୍ ସରକାରଙ୍କ ନିର୍ଦ୍ଦେଶ କ୍ରମେ ରଣପୁରର ରଜା ମୋର ପିତାଙ୍କୁ ଚାକିରିରୁ ବହିଷ୍କାର ଆଦେଶ ଦେଇଥିଲେ, ଯଦିଓ ମୋର ପିତା ତାହା ପୂର୍ବରୁ ଇସ୍ତଫାପତ୍ର ପଠାଇ ସାରିଥିଲେ ।

ସେ ଆଦେଶର ଅବିକଳ ନକଲ ନିମ୍ନରେ ଦିଆଗଲ ।

OFFICE OF THE DEWAN OF THE
RANPUR STATE

No. 287/10.2.6

From

B. D. Rath, Esqr.,

Dewan of the Ranpur State, Ranpur

To

Mr. Chandeswar Mishra,
Assistant Dewan, Ranpur State, Ranpur
Dated Ranpur, the 24th May 1939.

Sir

Under Ruler's order of the date, I have the honour to inform You that you have been dismissed from the State service with effect from 25th May 1939 for the part you played in connection with the murder of Major Bazalgette.

I have the honour to be Sir,

Your most obedient servant

Dewan, Ranpur State.

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେବ ଯେ ରଣପୁର ଗଡ଼ଜାତ ସରକାର ତଥା ବ୍ରିଟିଶ୍ ଶାସନ ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କ ଆନୁଗତ୍ୟରେ ସନ୍ଦେହ ପ୍ରକାଶ କରି- ଥିଲେ ଏବଂ ପ୍ରଜା ଆନ୍ଦୋଳନରେ ତାଙ୍କର ସମର୍ଥନ ଥିଲା ବୋଲି ବିଶ୍ୱାସ କରିଥିଲେ । ମୋର ପିତା ବୋଧହୁଏ ଏକମାତ୍ର ପଦସ୍ଥ ଗଡ଼ଜାତ କର୍ମଚାରୀ ଯିଏ କି ବ୍ରିଟିଶ୍ ଶାସନ ସମୟରେ ଖଦୀ ପିନ୍ଧୁଥିଲେ ଏବଂ ସ୍ୱାଧୀନତା ସଂଗ୍ରାମ ଓ ଗାନ୍ଧୀବାଦକୁ ପ୍ରତ୍ୟକ୍ଷ ସମର୍ଥନ କରୁଥିଲେ । ଗଡ଼ଜାତର ବେଠି ବେଗାରୀ ଓ ପ୍ରଜା ଶୋଷଣ ବିରୁଦ୍ଧରେ ସେ ଯଥାସାଧ୍ୟ ଉଦ୍ୟମ କରୁଥିଲେ ବୋଲି ଏପର୍ଯ୍ୟନ୍ତ ସେ ଅଞ୍ଚଳର ବୟସ୍କ ଲୋକେ କହନ୍ତି । ସେ ସମୟରେ ମଧ୍ୟ ଓଡ଼ିଶାର ଜନନେତା ସର୍ବଶ୍ରୀ ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ ଇତ୍ୟାଦିଙ୍କ ସହ ତାଙ୍କର ଅନ୍ତରଙ୍ଗ ସମ୍ପର୍କ ଥିଲା । ଜଣେ ବିଦ୍ୱାନ ଓ ଖ୍ୟାତନାମା ଲେଖକ ହିସାବରେ ତାଙ୍କର ସୁନାମ ଥିଲା । ସେତେବେଳେ ତାଙ୍କର ଅନେକ ଉପାଦେୟ ଲେଖା 'ଉତ୍କଳ ସାହିତ୍ୟ', 'ନବ ଭାରତ', 'ସହକାର' ଇତ୍ୟାଦି ପତ୍ରିକାରେ ଓ ସମ୍ବାଦ ପତ୍ରରେ ପ୍ରକାଶ ପାଉଥିଲା । ଏଥିରୁ କେତୋଟି ଲେଖା ମଧ୍ୟ କଲେଜ ଓ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମରେ ସ୍ଥାନ ପାଇଛି । ପଣ୍ଡିତ ଗୋଦାବରୀଶ ମିଶ୍ର, ଡକ୍ଟର ରାଧାନାଥ ରଥ, ଡକ୍ଟର ଶରତ ଚନ୍ଦ୍ର ମିଶ୍ର, ଶ୍ରୀଯୁକ୍ତ ମାୟାଧର ମାନସିଂହ, ଶ୍ରୀ ବିମଳ କୃଷ୍ଣ ପାଲ, ଆଡ୍‌ଭୋକେଟ୍ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଶ୍ରୀ ବିନୋଦ କାନୁନ୍‌ଗୋଙ୍କ ସହିତ ତାଙ୍କର ଘନିଷ୍ଠ ସାନ୍ନିଧ୍ୟ ଥିଲା । ତାଙ୍କୁ ଏକ ସତ୍ୟନିଷ୍ଠ ଚରିତ୍ରବାନ ବ୍ୟକ୍ତି ଭାବେ ଉପରୋକ୍ତ ବିଶିଷ୍ଟ ବ୍ୟକ୍ତିମାନେ ବିଭିନ୍ନ ଲେଖାରେ ଲିପିବଦ୍ଧ କରି ଯାଇଛନ୍ତି । ବେଜେଲ୍‌ଗେଟ୍ ନିଧନ ପରେ ସେ ରଣପୁର ଓ ନୟାଗଡ଼ର ଏକ ନୀତିବାନ, ସ୍ୱାଧୀନଚେତା ଓ ନିର୍ଭୀକ

ଆଡ଼ଭୋକେଟ୍ ଭାବେ ଖ୍ୟାତି ଅର୍ଜନ କରିଥିଲେ । ଆଶ୍ଚର୍ଯ୍ୟ ତଥା କ୍ଷୋଭର କଥା ବାସ୍ତବ ଐତିହାସିକ ତଥ୍ୟ ସଙ୍ଗେ କୌଣସି ସମ୍ପର୍କ ନଥାଇ ବର୍ତ୍ତମାନ କେତେକ ଲେଖା ଓ ନାଟକ ରଣପୁରର ପ୍ରଜା ଆନ୍ଦୋଳନ ସମ୍ବନ୍ଧରେ ଲେଖାଯାଇ ମଞ୍ଚସ୍ଥ କରାଯାଉଛି ଯେଉଁଥିରେ ଶ୍ରୀ ଚଣ୍ଡେଶ୍ୱର ମିଶ୍ରଙ୍କୁ ଏକ ଦେଶଦ୍ରୋହୀ ଓ ରାଜ-ବଂଶଧର କର୍ମଗୁଣ୍ଡା ହିସାବରେ ଏକ ବିବଦମାନ ଚରିତ୍ରର ରୂପ ଦିଆଯାଇଛି । ଏହି ନାଟକ ଓ ଲେଖାଗୁଡ଼ିକ ହଠାତ୍ ସଂଗ୍ରାମୀ ସାଜିଥିବା କିଛି ନୀତିହୀନ ବ୍ୟକ୍ତିଙ୍କ ଦ୍ୱାରା ପ୍ରସ୍ତୁତ ବା ପ୍ରଭବିତ ଯେଉଁମାନେ କି ନିଜେ ନିଜର ପରିବାରସହ ଏହି ନାଟକରେ ଜବରଦସ୍ତ ନାୟକ ଓ ମୁଖ୍ୟ ଦେଶପ୍ରେମୀ ସାଜିବାର ବ୍ୟବସ୍ଥା କରିଛନ୍ତି । ଏ ଦେଶର ଦୁର୍ଭାଗ୍ୟ ଯେ ମିଥ୍ୟା ଓ ପ୍ରତାରଣାକୁ ପୁଞ୍ଜି କରି ସ୍ୱାଧୀନତାର ଇତିହାସକୁ ମଧ୍ୟ କର୍ଦ୍ଦମାକ୍ତ କରି କେତେକ ଶଠ ଓ ପ୍ରତାରକ ନିଜ ଡିଣ୍ଡିମ ପିଟିବାରେ ସଫଳ ହୋଇ ପାରୁଛନ୍ତି । ସମାଜର ବୌଦ୍ଧିକ ଗୋଷ୍ଠୀ ମଧ୍ୟ ଏହି ନିର୍ଲଜ କାର୍ଯ୍ୟ କଳାପର ବିରୋଧ କରିବାକୁ ନିରାପଦ ମନେ କରୁ ନାହାନ୍ତି । ସ୍ୱାଧୀନତାର ଐତିହ୍ୟକୁ କଳୁଷିତ କରୁଥିବା ଗୋଟିଏ ପ୍ରସଙ୍ଗର ସୂଚନା ମାତ୍ର ଏଥିରେ ଦିଆଗଲା ।

(ସମ୍ବାଦ, ତା ୨୮ । ୮ । ୯୦ ରିଖ)



# ଆଦର୍ଶପୁରୁଷ ଚଣ୍ଡେଶ୍ୱର ମିଶ୍ର

ଦଣ୍ଡପାଣି ମିଶ୍ର

ରଣପୁର ଓ ନୟାଗଡ଼ରେ ପ୍ରସିଦ୍ଧ ଆଇନଜ୍ଞ ଓ ବୁଦ୍ଧିଜୀବୀ ତଥା ଦେଶ-ପ୍ରେମୀ ଓ ସୁସାହିତ୍ୟିକ ହିସାବରେ ପ୍ରତିଷ୍ଠା ଅର୍ଜନ କରିଥିବା ସ୍ୱର୍ଗତ ଚଣ୍ଡେଶ୍ୱର ମିଶ୍ରଙ୍କର ଆଜି ଊନବିଂଶ ଶ୍ରାଦ୍ଧତିଥି । ଉଜ୍ଜ୍ୱଳ ଚରିତ୍ରବତ୍ତା ଓ ସ୍ପଷ୍ଟବାଦିତା, ନୀତିବାଦୀ ଏବଂ ଜନହିତୈଷୀ ବ୍ୟକ୍ତିତ୍ୱ ପାଇଁ ସେ ରଣପୁର ପ୍ରଜା ଆନ୍ଦୋଳନ ସମୟରୁ ନୟାଗଡ଼ରେ ଆଇନ ବ୍ୟବସାୟ କରିବା ସମୟରେ ଏବଂ ୧୯୭୪ ମସିହା ଜୁନ ମାସ ୨ ତାରିଖରେ ଦେହାନ୍ତ ପର୍ଯ୍ୟନ୍ତ ସର୍ବସାଧାରଣଙ୍କ ସପ୍ରଶଂସ ଆନୁଗତ୍ୟ ଲାଭ କରିଥିଲେ । ରଣପୁର ଆନ୍ଦୋଳନରେ ବେଜେଲ୍‌ଗେଟ୍ ନିଧନ ପରେ ସେ ଆସିଷ୍ଟାଣ୍ଟ ଦେୱାନ ପଦବୀରୁ ଇସ୍ତଫା ଦେଇ ନୟାଗଡ଼ରେ ସରକାରୀ ଓକିଲ ହିସାବରେ ଅବସ୍ଥାପିତ ହେଲେ । ପ୍ରଜାମଣ୍ଡଳ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମର ଜଣେ ଅଗ୍ରଗଣ୍ୟ ଶୁଭାନୁଧ୍ୟାୟୀ ଉପଦେଷ୍ଟା ଭାବରେ ଗଡ଼ଜାତ ପ୍ରଜାମାନଙ୍କୁ ଶୋଷଣ ଓ ଉତ୍ପୀଡ଼ନରୁ ମୁକ୍ତ ରଖିବା ପାଇଁ ବ୍ରିଟିଶ ଶାସନ କର୍ତ୍ତୃପକ୍ଷ ଓ ମୋଗଲବନ୍ଦୀ ତଥା କଂଗ୍ରେସର ତତ୍‌କାଳୀନ ନେତୃବର୍ଗଙ୍କ ସଙ୍ଗେ ବାରମ୍ବାର ସମ୍ପର୍କ ସ୍ଥାପନ କରି ବହୁ କୌଶଳରେ ଅନ୍ୟାୟର ପ୍ରତିରୋଧ କରିଥିଲେ ।

ଗଡ଼ଜାତ ମିଶ୍ରଣ ସମୟରେ ଡକ୍ଟର ମହତାବ ଓ ନବକୃଷ୍ଣ ଚୌଧୁରୀଙ୍କ ଅନୁରୋଧକ୍ରମେ ନୟାଗଡ଼ ରାଜ ଶାସନର ମନ୍ତ୍ରିମଣ୍ଡଳର ଉପଦେଷ୍ଟା ଭାବେ ଅବସ୍ଥାପିତ ହୋଇଥିଲେ । ସେ ଏପରି ବିଚକ୍ଷଣ ବ୍ୟବସ୍ଥା କରିଥିଲେ ଯେ ରାଜ ପରିବାର ଲୋକେ କିମ୍ବା କୁଚକ୍ରୀ ରାଜ କର୍ମଚାରୀମାନେ ଓଡ଼ିଶା ସରକାରଙ୍କୁ ରାଜାଙ୍କ କ୍ଷମତା ହସ୍ତାନ୍ତର ବେଳେ ସମ୍ପତ୍ତି ବା ନିଯୁକ୍ତି ମୁନାଫା ହାସଲ

କରିବାରେ ବଞ୍ଚିତ ହେଲେ । ନବକୃଷ୍ଣ ଚୌଧୁରୀଙ୍କ ପରି ତୁଙ୍ଗ ନେତାମାନଙ୍କ ଅନୁରୋଧକୁ ଏଡ଼ାଇ ସେ ସକ୍ରିୟ ରାଜନୀତିର ପଦପଦବୀ ଲୋଭରେ ନ ପଡ଼ି ଜଣେ ସମାଜସେବୀ ସତ୍ୟନିଷ୍ଠ ଆଇନଜ୍ଞ ହିସାବରେ ସୁନାମ ପାଇଥିଲେ । ଚଣ୍ଡିବାବୁ ମିଛ କହନ୍ତି ନାହିଁ ବୋଲି ଲୋକଙ୍କର ବିଶ୍ୱାସ ଥିଲା । ଜଣେ ସଚ୍ଚୋଟ ଓ ବିଚକ୍ଷଣ ଓକିଲ ହିସାବରେ ବିଚାରପତି ଓ ସମସାମୟିକ ଆଇନ ବ୍ୟବସାୟୀମାନେ ତାଙ୍କୁ ସମ୍ମାନ କରୁଥିଲେ ।

ରଣପୁରରେ ହାଇସ୍କୁଲ ପ୍ରତିଷ୍ଠା, ନୟାଗଡ଼ରେ କଲେଜ ପ୍ରତିଷ୍ଠା ଓ ମହାନଦୀ ଜିଲ୍ଲା ନାମରେ ନୟାଗଡ଼ରେ ଏକ ଜିଲ୍ଲା ଗଠନ ପାଇଁ ତାଙ୍କର ନେତୃତ୍ୱ ଓ ଭୂମିକା ସ୍ମରଣୀୟ । ସେ ଜଣେ ଉଚ୍ଚକୋଟୀର ଲେଖକ ଓ ପ୍ରାବନ୍ଧିକ ଥିଲେ । ତାଙ୍କର ବହୁ ଲେଖା 'ନବଭାରତ', 'ଉତ୍କଳ ସାହିତ୍ୟ' ଓ 'ସହକାର' ଇତ୍ୟାଦି ପତ୍ରିକା ଓ ସମ୍ବାଦପତ୍ରମାନଙ୍କରେ ସ୍ଥାନ ପାଇଥିଲା । କେତେକ ଲେଖା ବିଶ୍ୱବିଦ୍ୟାଳୟଙ୍କ ପାଠ୍ୟକ୍ରମରେ ରହିଛି । ସମସ୍ତ ଅନାଚାର ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରେ ସେ ଆଗୁଆ ଥିଲେ । ପ୍ରତିଷ୍ଠ ଦେଶ-ସେବୀ ନେତୃବର୍ଗ, ସାହିତ୍ୟିକ ଓ ବୁଦ୍ଧିଜୀବୀ ଯଥା ନବକୃଷ୍ଣ ଚୌଧୁରୀ, ଡକ୍ଟର ମହତାବ, ଡଃ ରାଧାନାଥ ରଥ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ, ଲିଙ୍ଗରାଜ ମିଶ୍ର, ପବିତ୍ର ମୋହନ ପ୍ରଧାନ, ମାୟାଧର ମାନସିଂହ, ଲକ୍ଷ୍ମୀନାରାୟଣ ସାହୁ, ଜଷ୍ଟିସ ହରିହର ମହାପାତ୍ର, ଭଗବତୀ ପାଣିଗ୍ରାହୀ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଜଷ୍ଟିସ୍ ଜୟକୃଷ୍ଣ ମିଶ୍ର, ଜଷ୍ଟିସ୍ ରଙ୍ଗନାଥ ମିଶ୍ର, ଗଙ୍ଗାଧର ମହାପାତ୍ର ଏବଂ ଆହୁରି ଅନେକ ବରେଣ୍ୟ ବ୍ୟକ୍ତିଙ୍କ ସଙ୍ଗେ ତାଙ୍କର ଅନ୍ତରଙ୍ଗ ସମ୍ପର୍କ ଥିଲା । ସମାଜର ଯେ କୌଣସି ବର୍ଗର ଲୋକେ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି, ସେମାନେ ଚଣ୍ଡେଶ୍ୱର ବାବୁଙ୍କ ଅମାୟିକ ତଥା ନିର୍ଭୀକ ଆତ୍ମୀୟତାରେ ମୁଗ୍ଧ ହୋଇଛନ୍ତି ।

ଏହି ମହାନ୍ ଆତ୍ମାଙ୍କ ସ୍ମୃତିଚାରଣ ଆଜି ଆମର କର୍ତ୍ତବ୍ୟ । ନିକଟରେ ତାଙ୍କର ଜୀବନୀ ସମ୍ବଳିତ ଏକ ସ୍ମରଣିକା ପ୍ରକାଶ ଓ ଉନ୍ମୋଚନର ବ୍ୟବସ୍ଥା ହେଉଛି ।

( ଧରିତ୍ରୀ ତା ୨ । ୬ । ୧୯୯୩ ରିଖ )



# ରିକ୍ସାବାଲା

( ନବଭାରତ ମିଥୁନ ୧୩୪୬ )

ଶ୍ରୀ ଚନ୍ଦ୍ରେଶ୍ୱର ମିଶ୍ର
ବି. ଏ., ବି. ଏଲ୍.

କଟକ ଷ୍ଟେସନରେ ଓହ୍ଲାଇ ମୋ ବନ୍ଧୁ ଓ ମୁଁ ଥାର୍ଡକ୍ଲାସ ଗେଟ ବାଟେ ବାହାରି ପଡ଼ି ଖଣ୍ଡେ ଯାନ ଖୋଜିବାରେ ଲଗିଲୁଁ । ମୋର ବନ୍ଧୁଙ୍କର ଖଣ୍ଡେ ଗ୍ରେଟ (ସମ୍ଭବତଃ) ହାଲୁକା ସୁଟ୍‌କେଶ୍ ଓ ତାହା ସଙ୍ଗେ ମୋର ଗୋଟିଏ ଗ୍ରେଟ ଲୁଗା ଗଣ୍ଠିଗ ଧରି ପଛରେ କୁଲିଟାଏ ମଧ୍ୟ ଗ୍ଲଲିଛି । ପାଠକ ଡେଉଁ ନ ଡେଉଁଣୁ ଡଜନେ ଗାଡ଼ିବାଲ ପଗ୍ଚରି ଅସ୍ତବ୍ୟସ୍ତ କରିଦେଲେ "ବାବୁ, ଘୋଡ଼ାଗାଡ଼ି; ବାବୁ, ବଳଦ ଗାଡ଼ି; ବାବୁ, ରିକ୍‌ସା ।" ବିନା ବାକ୍ୟବ୍ୟୟରେ ସେ ସମସ୍ତଙ୍କୁ ପାର ହୋଇ ଶେଷରେ ଗୋଟେ ରିକ୍‌ସାବାଲକୁ ବାବୁ-ଭଷାରେ ପଗ୍ଚରିଲୁ, "ଆରେ, ନିମଚଉଡ଼ିକୁ ରିକ୍‌ସା ନବୁ ?" ଲେକଟି ଉତ୍ତରରେ ତରତର ହୋଇ କହିଲ "ଆଜ୍ଞା, ବସ ।" ପଗ୍ଚରିଲି, "ଭଡ଼ା କେତେ ନବୁ, କହ ।" "ଆଜ୍ଞା, ଯାହା ଦେବେ ।" ଏହି କଥାତକ କହୁଁ ନ କହୁଣୁ, ବନ୍ଧୁ ମୋର କହି ପକାଇଲେ, "ଛଅ ପଇସାରୁ ବେଶୀ ଦିଆଯିବ ନାହିଁ ।" "ବାବୁ, ଆପଣଙ୍କ ଧର୍ମ" କହି ସେ ଗାଡ଼ିଖଣ୍ଡ ବାଟକୁ ଆଣି ରଖି ଗାଡ଼ିରେ ବାବୁମାନଙ୍କ ବସିବାର ଅପେକ୍ଷାରେ ଏବଂ ଗାଡ଼ି ଟାଣିବାର ଉଦ୍ୟମରେ ରହିଲ । ଆମ୍ଭେମାନେ ଚିର ଅନୁଭୂତିରୁ ଜାଣୁଁ ଯେ, କଟକ ଷ୍ଟେସନରେ ଗାଡ଼ିବାଲଙ୍କ ସହିତ ଭଡ଼ା ଛିଣ୍ଡାଇବା ନିତାନ୍ତ କମ୍‌ରେ ୧୦।୧୫ ମିନିଟ୍‌ର କାମ । କେବଳ ସେତିକି ନୁହେଁ, ଦୁଇ ତିନି-ଜଣ ଗାଡ଼ିବାଲଙ୍କ ଆକ୍ରମଣ ଭିତରେ ପଡ଼ିଗଲେ, ଭଦ୍ରଲେକର ଦୁଇ ଘ୍ରିଅଣା ଇଜ୍ଜତ ମଧ୍ୟ ହରଇବାକୁ ପଡ଼େ । ଏପରି ଅବସ୍ଥାରେ, ଏ ଲେକଟାର ନିସ୍ପୃହତା ଦେଖି ମୁଁ ତର୍କ-ଶାସ୍ତ୍ର ବଳରେ ସ୍ଥିର କରିନେଲି ଯେ, ଏ ଲେକଟା ତ ଗଡ଼ଜାତର ନିଶ୍ଚୟ, ତାହା ଛଡ଼ା ନୂଆ କଟକ ଆସିଛି । ବେଶଭୂଷା, କଥାବାର୍ତ୍ତା ଭଲ ରକମ ଲକ୍ଷ୍ୟ କରି, ପୂର୍ବର ସାମାନ୍ୟ କଥନଟାକୁ ବିଶେଷ କଥନ ପର୍ଯ୍ୟନ୍ତ ଘେନି ଆସିଲି ।

ଏଥି ମଧ୍ୟରେ ବନ୍ଧୁ ମୋର ସୁଟ୍‌କେଶ୍ ଆଣିଥିବା କୁଲି ସଙ୍ଗେ ବହୁତ ଯୁକ୍ତି ତର୍କ, ଆଇନ କାନୁନ, ଧମକ ଚମକ, ଭଷା ଅପଭଷାର ଅଦଳ ବଦଳ କରି ତିନି ପଇସାରେ କୁଲିକୁ ବିଦାୟ କରିଦେଲେ—କୁଲି ବଦମାସଟା ପଇସା ନେଇ ଯିବାବେଳେ କଅଣ ଗୁଡ଼ାଏ ବାବୁଦ୍ୱୟଙ୍କ ପ୍ରତି ଲକ୍ଷ୍ୟ କରି କହି କହି ଯାଉଥିବାର ବୋଧ ହେଲା । ସେମାନଙ୍କର ସେପରି କହିବାର ଅଭ୍ୟାସ, ଏହା ଭବି, ସେ ସବୁ ନ ଶୁଣିବା ନିରାପଦ ଓ ଭଦ୍ରୋଚିତ ମନେ କରି ରିକ୍‌ସାରେ ବସିଲୁଁ । ରିକ୍‌ସାବାଲା ଘଣ୍ଟି ବଜାଇ ବଜାଇ ରିକ୍‌ସା ଟାଣିଲା, ଅର୍ଥାତ୍ କୁଇକ୍ ମାର୍ଚ୍ଚ ଆରମ୍ଭ କଲା ।

ଆମ୍ଭେମାନେ ଦୁଇଜଣ ମାତ୍ର କଲେଜ ପାଶ୍‌କଲା ବାବୁ । ମୁଁ ବଡ଼ ପରୀକ୍ଷାଟାଏ ପାଶ୍ କରିସାରି ଚାକିରି କରିବା ପାଇଁ ସାର୍ଟିଫିକେଟ ଯୋଗାଡ଼ କରିବା ଉଦ୍ଦେଶ୍ୟରେ କଟକର ବଡ଼ ବଡ଼ ଲୋକଙ୍କ ପାଖକୁ ଦେଖା କରିବାକୁ ଆସୁଥାଏ । ଅନ୍ୟ ବନ୍ଧୁ ଜଣକ କଟକ କଲେଜର ଅଧାପାଠ ସାଙ୍ଗ କରି ଆଉ ଅଧକର ଉଦ୍ଦେଶ୍ୟରେ ଆସୁଥାନ୍ତି । ଗୋଟେ ଖରାଦିନିଆ ପରୀକ୍ଷା ଦେଇ ଅଳ୍ପ ଦିନ ତଳେ ଗାଁକୁ ଯାଇଥିଲେ । ଜିନିଷ ପତ୍ର ସବୁ ନାନା କାରଣରୁ କଟକରେ ଛାଡ଼ିଦେଇ ଯାଇଥିଲେ । ତେଣୁ କେବଳ ସୁଟକେଶ୍ ଖଣ୍ଡେ ଧରି ଆସୁଥିଲେ ।

ବନ୍ଧୁ ଯେତେବେଳେ ରିକ୍‌ସାବାଲାକୁ ଷ୍ଟେସନରୁ ନିମଚଉଡ଼ି ୪ ମାଇଲ ରାସ୍ତା ପାଇଁ ଛଅ ପଇସାର ବ୍ୟବସ୍ଥା କରିଦେଲେ ଏବଂ କୁଲି ସଙ୍ଗେ ବହୁତ କସରତ କରି ତିନି ପଇସା ବ୍ୟୟରେ ନିଜର ମିତବ୍ୟୟିତା ଅଭ୍ୟାସ ରକ୍ଷା କରି ଆତ୍ମପ୍ରସାଦ ଲଭ କରୁଥିଲେ, ସେତେବେଳେ ମୁଁ ଟିକିଏ ନିଶ୍ଚିନ୍ତ ନ ଥିଲି । ମୋର ଇଚ୍ଛା, ଆମ ଶିକ୍ଷିତ ବନ୍ଧୁମାନେ ଏ ସ୍ଥଳମାନଙ୍କରେ ଟିକିଏ ବିଚାରବନ୍ତ ହେଲେ ଭଲ ହୁଅନ୍ତା । କଟକ ଷ୍ଟୋର, କୋହିନୁର ଷ୍ଟୋର, ରମେଶ୍ୱର ଦୋକାନ ପ୍ରଭୃତିରୁ ପାଞ୍ଚ, ଦଶ, କୋଡ଼ିଏ ଟଙ୍କାର ଜିନିଷ କିଣିଲବେଳେ ଆମେ ବାବୁ-ମାନେ ଦାମ୍‌ଟା ଶୁଣିବା ମାତ୍ରେ ବା କ୍ୟାସ୍‌ମେମୋଟା ପାଇବା ମାତ୍ରେ ପର୍ସ (ଟଙ୍କାମୁଣା)ରୁ ଠେକ୍‌ଠୋକ୍ ବିନା ତର୍କରେ ଗଣିଦେଉ, କିନ୍ତୁ କୁଲି ମଜୁରିଟା ଦେବାବେଳେ, ଶାଗ ବାଇଗଣ ଚାରି ପଇସାର କିଣିଲବେଳେ କିମ୍ବା ଭିକାରୀଟାକୁ ପଇସାଏ ଅଧଲାଏ ଦେଲବେଳେ ଅର୍ଥ ଶାସ୍ତ୍ରର ସୂକ୍ଷ୍ମନୀତିକୁ ମଧ୍ୟ ବାଦ୍ ଦେଇ ପାରୁ ନାହିଁ । ଫଳରେ ୧୦।୧୫ ମିନିଟ ବା ସ୍ଥଳ ବିଶେଷରେ ଅଧଘଣ୍ଟାଏ ସମୟ ବ୍ୟୟ କରି ଯେଉଁ ଅଧଲାଏ, ପଇସାଏ ବା ଖୁବ୍ ବେଶୀ ହେଲେ ଦି'ପଇସା ପକେଟରେ ରଖିପାରୁ, ସେଥିପାଇଁ ଖୁବ୍ ଆତ୍ମପ୍ରସାଦ ପାଉଁ । ମୋର ଦୁର୍ବଳ

ଚିତ୍ତରୁ ହେଉ ବା ବିଷୟ ବୁଦ୍ଧିର ଅଭାବରୁ ହେଉ, ମୁଁ ଏ କଥାଟା ପସନ୍ଦ କରି-ପାରେ ନାହିଁ ଏବଂ ଅନେକ ସମୟରେ କାମରେ ଲଗାଇ ପାରେ ନାହିଁ ।

ଏଠାରେ କହିରଖେଁ, ଖୋରଧା ରୋଡ଼ଠାରୁ କଟକ ଷ୍ଟେସନ ପର୍ଯ୍ୟନ୍ତ ଆମ ଦୁଇ ଜଣଙ୍କର ଅନ୍ୟୂନ ଟ ୦ ୫୵ ପଇସା ସୌଖିନ ଖର୍ଚ୍ଚ ହୋଇଯାଇଥାଏ । ଯଥା, ବନ୍ଧୁଙ୍କର ଚା ଏକ କପ ଟ ୦ ⁄୬, ଲେମୋନେଡ ଦୁଇ ବୋତଲ ଟ ୦ ।୵, ସିଗାରେଟ ଟ ୦ ୵ ଓ ପାନ ଟ ୦ ⟨୬ । ବିନା କ୍ଷୁଧା ତୃଷାରେ ନିଜର ମନଖୁସି ନିମିତ୍ତ ଯାହା ଖରଚ କରଯାଏ ତାହା ସୌଖିନ ଖର୍ଚ୍ଚ । ଏ ପ୍ରସଙ୍ଗରେ ମିତବ୍ୟୟିତା ପ୍ରଶ୍ନ ଉଠାଇବା ଆମେମାନେ ନାପସନ୍ଦ କରୁ । ନିଜର ଖୁସି ଖର୍ଚ୍ଚ କରିବା ଏବଂ ପର ହାତକୁ ପଇସା ବଢ଼ାଇ ଦେବା ଭିତରେ ବହୁତ ପାର୍ଥକ୍ୟ ଅଛି ।

ସେ ଯାହା ହେଉ, ରିକ୍ସାରେ ଚଢ଼ିବା ସଙ୍ଗେ ସଙ୍ଗେ ରିକ୍ସାବାଲା ଦୌଡ଼ିବାକୁ ଆରମ୍ଭ କଲା । ଗର୍ତ୍ତସଙ୍କୁଳ, କର୍ଦ୍ଦମାକ୍ତ କଟକ ରାସ୍ତା ଉପରେ କେତେ-ଦୂର ଦୌଡ଼ିବା ପରେ ଗଳଦ୍‌ଘର୍ମ ଓ ବେଦମ୍ ହୋଇ ରିକ୍ସାବାଲା ଆସ୍ତେ ଆସ୍ତେ ଗାଡ଼ି ଟାଣିଲା ଏବଂ ତାହା ସଙ୍ଗେ ନିଜର ଦୁଃଖ ସୁଖ ଦି'ପଦ ମନକୁ ମନ କହିବାକୁ ଆରମ୍ଭ କଲା । କାରଣ ଆମେ ଦୁହେଁ ଇଂରେଜୀ ଓଡ଼ିଆ ମିଶା ଗପ କଅଣ ଆରମ୍ଭ କରିଥାଉଁ । ରିକ୍ସାରୋହୀ ବାବୁମାନେ ତାହାର ଦୁଃଖ ସୁଖ ଶୁଣିବାକୁ ଆଗ୍ରହ ବା ଅବସର ଦେଖାଇବେ, ଏ ଦୁରାଶା ତାର ଥିଲା କି ନାହିଁ, ଠିକ୍ କହି ହେବ ନାହିଁ ; କିନ୍ତୁ ସେ ବଳେ ବଳେ କହି ପକାଇଲା "ଆଜ୍ଞା, ଏତେ ରାତି ହେଲାଣି, ପିଲାଟା କୋଉଠି ଶୋଇ ପଡ଼ିଥିବ । ବଜାର ପଡ଼ି ଯିବଣି । କେତେବେଳେ କଅଣ ଖାଇବ ?"

ଆଗରୁ ଲୋକଟା ଗଡ଼ଜାତିଆ ବୋଲି ମୋର ଟିକିଏ ଆଗ୍ରହ ଜନ୍ମିଥିଲା । ତା'ପରେ ଏ କଥାଗୁଡ଼ାକ ଶୁଣି ଆଉ ଟିକିଏ ଆଗ୍ରହ ହେଲା । ପଚାରିଲି "ରିକ୍ସାବାଲା, ତୋ ଘର କେଉଁଠି କି ?"

"ଆଜ୍ଞା, ମୋ ଘର ନଈ ଆର ପାରିରେ । ଏଠି ଆସି ମାସେ ହେଲା କାମ କରୁଚି । ରାତିରେ ଗାଡ଼ି ଟାଣେ । ଦିନରେ ଗାଡ଼ି ଟାଣିବା କିଏ ଦେଖିଲେ ଗାଁରେ ଜାତି ବାସନ୍ଦ କରିବେ । ରଜାଘର ଜୋରିମାନା ନେବେ । ଆଉ ଦି'ପା ଭୂଇଁ ଅଛି, ସେତକ—"

"ଆଉ ପିଲା କଥା କଣ କହୁଥିଲୁ ? ତୋ ପୁଅ ନାଁ କଣ ? ସେ କଣ ରିକ୍ସା ବୁହେ ?"

"ଆଜ୍ଞା, ନାଇଁ ଆଜ୍ଞା, ସେ ତ ୭ ବର୍ଷର ପିଲାଟାଏ, ତାକୁ ଏଠିକି ଘିନି ଆସିଚି, ଯାହା ଦି'ପଇସା ପାଏ ଦୁହେଁଯାକ ବାଣ୍ଟିକୁଣ୍ଟି ଖାଉଁ । ଆଉ କିଏ ଅଛି ଯେ କାହା ପାଖରେ ଛାଡ଼ିଦେବି ?"

"ସେ ପିଲାର କଣ ମା ନାହିଁ ?"

ଦୀର୍ଘ ନିଶ୍ୱାସ ପକାଇ ଗାଡ଼ିବାଲା କହିଲା "ନାହିଁ ଆଜ୍ଞା, ଗଲା ବର୍ଷରେ କାନ୍ଥ ପଡ଼ିଗଲା, ମାଇପ ମଲା, ତିନି ମାସର ପୁଅ ମଲା, ନଈପାଣି ମାଡ଼ି ଆସିଲା, ନଈ କୂଳରେ ଘର । ଦାରୁଗା ବାବୁଙ୍କ ବିଲବସ୍ତ୍ର ବେଠିକି ଗାଁଯାକ ଯାଇଥିଲୁ । ମୁଁ ତ ଯାଇଥିଲି, ଘରେ ନ ଥିଲି । ମାଇକିନିଆ ଲୋକ, ଘରେ ଧାନ ଡୋଲିଟିଏ, କଂସା ବାସନ ଦିଖଣ୍ଡ ଥିଲା ବୋଲି ଘର ଛାଡ଼ି ଯାଇ ପାରିଲା ନାହିଁ । ପାଣି ଯିମିତି ଟିକିଏ ଖସି ଯାଇଛି, ମିଳାକାନ୍ଥ ଭୁଷ୍‌କିନା ମାଡ଼ି ବସିଲା ।"

"ଏ ଯୋଉ ପୁଅଟି ଅଛି, ସେ କଣ ଘରେ ନ ଥିଲା ପରା ।"

"ନାହିଁ, ଆଜ୍ଞା, ସେ ଯାଇଥିଲା ପାଠ ପଢ଼ା ବେଠିକି, ମୁଁ ଯାଇଥିଲି ବିଲବସ୍ତ୍ର ବେଠିକି । ସେ ମା ପିଲା ଦିହେଁ ଘରେ ଥିଲେ ।"

"ପାଠପଢ଼ା ବେଠି କଣ ?"

"ଆଜ୍ଞା ଆମ ରାଜ୍ୟରେ ସବୁ ପିଲେ ପାଠ ପଢ଼ିବାକୁ ଯାନ୍ତି । ପାଞ୍ଚ ସାତ ଖଣ୍ଡ ଗାଁରେ ଗୋଟିଏ ଇସ୍କୁଲ ଘର ବେଠିରେ ତିଆର ହୋଇଛି । ଯାହା ପିଲା ପଢ଼ିବାକୁ ନ ଯିବ ସେ ଜରିମାନା ଦେବ, ବେଠି କରିବ । ଆଜ୍ଞା, ଆମ ପିଲେ ପାଠ ପଢ଼ି କଣ କରିବେ ? ଆମେ ତ ବେଠି କରିବୁ, ମୂଲ ଲାଗିବୁ । ଆଉ ଏ ପାଠ ପଢ଼ା ବେଠି କିଆଁ ? ଆମ ପିଲେ ଯାହା କାଠ ଦିଖଣ୍ଡ, ପତ୍ର ବୋଝେ, ଶାଗ ପତ୍ର ଦିଟା ଆଣୁଥିଲେ, ସେତକ ମଧ—"

ମୋର ବନ୍ଧୁ ମୋତେ ଇଂରେଜୀରେ କହିଲେ "ଦେଖ କିପରି ଏ ନିର୍ବୋଧମାନେ ଏଡୁକେଶନର ମୂଲ୍ୟ ବୁଝୁ ନାହାନ୍ତି । ଏମାନଙ୍କ ଉପରେ ଅତ୍ୟାଗ୍ରର ନ ହେବ ତ ହେବ କାହା ଉପରେ ?"

ବନ୍ଧୁଙ୍କ କଥାକୁ ନ ଶୁଣିଲା ପରି ହୋଇ ରିକ୍‌ସାବାଲାକୁ ପଚାରିଲି "ଆଚ୍ଛା, ତୋର ଆଉ ଗାଁରେ କଣ ଅଛି ?"

ଉତ୍ତର—"ଆଉ ଅଛି କଣ, ଆଜ୍ଞା ! ମାଇପ କାନ୍ଥ ପଡ଼ି ମରିବାରୁ ଦାରୁଗା ପୁଲିସି ଆସି ମାଡ଼ ବେଜିତି କଲେ । ମଣିଷମାରୁ ମକଦମା ହେବ

ବୋଲି କହିଲେ । ମୋର ତ ଆଉ କିଛି ନ ଥିଲା, ଖାଇ ଦାମୁଡ଼ି ଯୋଡ଼ିକ ବିକି ଟ ୫୦ ୲ ଦେଇ ଖଲାସ ହେଲି । ବୋପା ଦିନ୍ନକରୁ ୫ ମାଣ ଜମି ଥିଲା ଯେ ତା ଆଗରୁ ଯାଇଥିଲା ।''

''ସେ ଜମି କୁଆଡ଼େ ଗଲା ?''

''ଆଜ୍ଞା, ଭଗବତ ଶୁଣିବାକୁ ଯାଇ ନ ଥିଲି ବୋଲି ୩ ମାଣ ଜମି ବିକି ଟ ୨୦୦ ଙ୍କା ପଖ ରଜା ଘରକୁ ଜରିମାନା ଦେଲି । ଆଉ ପଚାରୁଛନ୍ତି କଣ ?''

''ଭଗବତ.........ଜରିମାନା କଣ ?''

''ଆମ ରାଜ୍ୟରେ ଆଜ୍ଞା, ରଜା ନୂଆ ନିୟମ କରିଛନ୍ତି ଯେ ସମସ୍ତେ ସନ୍ଧ୍ୟାବେଳେ ଭଗବତ ଘରେ ଭାଗବତ ଶୁଣିବେ । ଯେ ନ ଯିବ ସେ ଜରିମାନା ଦେବ । ମୋର ସ୍ତ୍ରୀ ବାଧିକା ପଡ଼ିଥିଲା, ମୁଁ ଘରେ ଏକୁଟିଆ ଛାଡ଼ି ଯାନ୍ତି କିମିତି ? ସେଥିପାଇଁ ରଜାଘର ଜରିମାନା ନେଲେ । କାହାକୁ କହିବି, କର୍ମକୁ........''

ମୋର ବନ୍ଧୁ ଇଂରେଜୀରେ ଟିପ୍ପଣୀ ଦେଲେ, ''ଲୋକଟାର ଧୈର୍ଯ୍ୟ ପ୍ରଶଂସନୀୟ ।''

ଲୋକଟା ପୁଣି ଆରମ୍ଭ କଲା ''ମୋ ବାଡ଼ିରୁ କଖାରୁ ଚୋରି ଗଲା । ପୁଲିସିରେ ଇତଲା ଦେଲିନାହିଁ ବୋଲି, ଶହେ ଟଙ୍କା ଜରିମାନା ହେଲା ! ଆଉ ମାଣକ ଅସଲ ସାରୁବିଲ—ବିକି ଦେଲି । ଆଉ ନାଁକୁ ଦିପା ଅଛି । ସେତିକ ଥିଲେ ପିଲଟି ବଞ୍ଚିଲେ ବୋପା ରଖି ଯାଇଛି ବୋଲି କହିବ । ଆଉ କଅଣ କରିବି, ମୋ କପାଳ ତ ଇତା ।''

କିଛିକ୍ଷଣ ସ୍ଥିର ନିସ୍ତବ୍ଧ ଭାବରେ ଭାବି ତାକୁ ପଚାରିଲି, ''ଆଚ୍ଛା, ତୁ ଏତେ କଷ୍ଟ କାହିଁକି ପାଉଚୁ ? ସେଠି ନିଜ ଗାଁରେ ଦୁଃଖେ ସୁଖେ ରହି ମୂଲ-ପାତି ଲାଗି ଚଳିଥାନ୍ତୁ, ପିଲଟି କଥା ବୁଝୁଥାନ୍ତୁ, ଏଠି ଆସି ପଡ଼ିଚୁ କିଆଁ ?'' ରିକ୍ସାବାଲା ଦୀର୍ଘ ନିଃଶ୍ୱାସ ପକାଇ କହିଲା ''ଏଠି ଆହୁରି ବଞ୍ଚିଛୁ ବାପ ପୁଅ, ସେଠି ଥିଲେ ମରି ସାରନ୍ତୁଣି । ( ମନେ ମନେ ଈଶ୍ୱରଙ୍କୁ ଧନ୍ୟବାଦ ଦେଇ ଭାବିଲି, ଧନ୍ୟ ଈଶ୍ୱର ! ତୁମେ ଜୀବନ ପ୍ରତି ବହୁତ ମମତା ଦେଇଛ !! ତୁମର ଶକ୍ତିର ସାର୍ଥକତା ଏହିଠାରେ ! ) ସେଠି ଦେଠି କରି କରି ମରୁଥାନ୍ତି । କଣ ଖାନ୍ତି, ପିଲାକୁ କଣ ଖାଇବାକୁ ଦେଅନ୍ତି ? ଏଠି ହେଲେ ପିଲଟି ମନ ଇଚ୍ଛାରେ ବୁଲଚଲା ଖେଳାବୁଲା କରୁଛି । ଗାଁରେ ପାଠ ପଢ଼ି ନ ଗଲେ ନ ଚଳେ ।

ତାପରେ ତାକୁ ମାଡ଼, ମତେ ଜୋରିମାନା । ଏଠାକୁ ଲୁଚି ପଳାଇ ଆସିଛି । ଏହିପରି ଯେବେ କେତେଦିନ ବଞ୍ଚିଯାଉଁ--- ।''

ବନ୍ଧୁ ଉଚ୍ଚ ସ୍ୱରରେ ବିରକ୍ତ ହୋଇ କହିଲେ ''ଆରେ, ବେଗେ ଚଲ, କେତେ ଗପୁଚୁ ? ବସାରେ ପହଞ୍ଚିବୁ ଆମେ କେତେବେଳେ ?''

''ଆଜ୍ଞା, ହଁ, ଧାଇଁଲି, ମୋ ପିଲାଟି ଭୋକରେ ପଡ଼ିଥିବ । କଣ ଦିଟା ଖୁଆଇବି ।'' କହି ଘଣ୍ଟି ଠଣ ଠଣ କରି ରିକ୍ସାବାଲା ଧାଇଁଲା ।

ମୋର ଭାବନା-ସ୍ରୋତରେ ବାଧା ଦେଇ ବନ୍ଧୁ ଇଂରେଜୀ ଓ ଓଡ଼ିଆରେ ବକ୍ତୃତା ଆରମ୍ଭ କଲେ ''ମୋର ଜଣେ ଗଡ଼ଜାତରେ ଚାକିରି କରନ୍ତି । ଆଗେ ହେଡ୍ କନେଷ୍ଟବଲ ଥିଲେ, ଏବେ ଏସ୍. ଡ଼ି. ଓ. । ସେ ତ କହନ୍ତି, ଗଡ଼ଜାତ ଖୁବ୍ ଭଲ । ଲୋକେ ଖୁବ୍ ଭଲରେ ଥାନ୍ତି । ଜିନିଷ ଶସ୍ତା, ରାତି ଅଧରେ ଖୋଜିବ ତ ଶହ ଶହ ଲୋକ ତମ ସଙ୍ଗରେ ବାହାରିବେ । ସେଠି ବାଘ ଶିକାର ଖୁବ୍ ହୁଏ । ସେଠା ଲୋକେ ଭାରି ସାହସୀ । ହଜାର ହଜାର ଲୋକ ଜଙ୍ଗଲ ଭିତରେ ପଶି ଜନ୍ତୁ ଘଉଡ଼ାଇ ଆଣନ୍ତି । ମୁଁ ଏ ବର୍ଷ ହାତୀ ଖେଦା ଦେଖିବାକୁ ଯିବି । ହଜାର ହଜାର ଲୋକ ମାସ ମାସ ଲାଗି ଖେଦା ତିଆରି କରନ୍ତି— ।''

ରିକ୍ସାବାଲା ରିକ୍ସାଟାର ଗୋଟାଏ ଚକ ଖାତରେ ହଠାତ୍ ପଡ଼ିଗଲା । ବନ୍ଧୁଙ୍କ ବକ୍ତୃତା ସ୍ରୋତ ବନ୍ଦ ହୋଇଗଲା । ମଜୁରିଦାର ହୋଇ ମଜୁରିଦାତାଙ୍କ ଦେହକୁ ଅକାରଣ ବାଧା ଦେଇଥିବାରୁ ରିକ୍ସାବାଲାକୁ ବନ୍ଧୁଙ୍କଠାରୁ ଟିକିଏ ଗାଳି ସହିବାକୁ ପଡ଼ିଲା । କିଛି ସମୟ ପରେ ଗାଡ଼ି ବସା ନିକଟରେ ପହଞ୍ଚିଲା । ବନ୍ଧୁ ଆଗେ ଓହ୍ଲାଇ ପକେଟ୍‌ରୁ ଛଅଟି ପଇସା କାଢ଼ି ରିକ୍ସାବାଲା ହାତକୁ ପକାଇ ଦେଲେ । ପଇସା ହାତରେ ଦେଖି ରିକ୍ସାବାଲା ମୋ ମୁହଁକୁ ଟିକିଏ ଚାହିଁଲା । ମୁଁ ପକେଟରୁ ଗୋଟିଏ ଅଣି ତା ହାତରେ ଦେବାରୁ ଜୁହାରଟିଏ ହେଇ ଗାଡ଼ିବାଲା ଗୁଡ଼ିଆ ଦୋକାନ ଆଡ଼େ ଚାଲିଗଲା ।

ବାରଟାରେ ଶୋଇବାକୁ ଯାଇ ଅନେକ ସମୟ ସେ ଦିନ ଭାବିଥିଲି— ''ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ କରନ୍ତି, ଏ କଥାଟା ପାଗଳର ଉକ୍ତି ଅଥବା ଅତି ଖୋସାମଦୀ ଭକ୍ତିର ବ୍ୟର୍ଥ ତୋଷାମୋଦ !''



# ଚୈତନ୍ୟ-ଲାଭ

ଶ୍ରୀ ଚନ୍ଦ୍ରେଶ୍ୱର ମିଶ୍ର ବି. ଏ, ବି. ଏଲ୍.

(୧)

ହରି ଶତପଥୀ ଗାଁ ଲୋକଙ୍କ ସଙ୍ଗେ ଲଗେଇଛି, ସେ ତା'ର ଝିଅକୁ ଆଉ ଥରେ ବିଭା ଦେବ । କାହାକୁ ଖୋସାମୋଦ୍ କରୁଚି, କାହା ଆଗରେ କାନ୍ଦୁଚି, କାହା ଦୁଆରେ ଧାରଣା ଦେଇ ପଡ଼ି ରହୁଚି ; ସମସ୍ତଙ୍କୁ କହୁଚି ସମସ୍ତେ ଅନୁମତି ଦିଅନ୍ତୁ, ସେ ତାର ବାଳୁତ ବିଧବା ଝିଅକୁ ଆଉ ଥରେ ବିଭା ଦେବ ।

ହରି ଶତପଥୀଙ୍କ ଝିଅ ସାବିତ୍ରୀ ବିଧବା ହୋଇଚି । ସଂସାରରେ ଅନେକ ବିଧବା ହୁଅନ୍ତି, ଶତପଥୀଙ୍କ ଝିଅ ବିଧବା ହେଲା । ଏଥିପାଇଁ ଏତେ ଗହଳ କିଆଁ ? ଗାଁ ଗୋଟାକେ ଦଶ ପଚିଶ ବିଧବା ତ ଥାନ୍ତି, ସେଥି ମଧ୍ୟରୁ ପାଞ୍ଚ ଦଶ ବାଳ ବିଧବା ଥିଲେ, ତାଙ୍କ ସାଙ୍ଗକୁ ସାବିତ୍ରୀ ନୂଆ ଯୋଗ ହେଲା । ଏଥିପାଇଁ ଗାଁ ଲୋକ ବିଚଳିତ ହେବେ କାହିଁକି ? ଗାଁ ବୁଡ଼ିଯିବ ନା ରାଜ୍ୟ ଭସିଯିବ ? ଲୋକେ କହିଲେ "ତାକୁ ବିଧବା ଯୋଗ ଥିଲା ।" ଗାଁ ମାଇପେ କହିଲେ "ଧାନ କୁଟି, ସୂତା କାଟି ତା ଦିନ କଟାଇବ, ଆଉ କଣ କରିବ ?"

ସାବିତ୍ରୀ ବିଧବା ହେଲା ଦିନ ଖବର ପାଇବା ମାତ୍ରେ ମାଇକିନିଆ ମରଦ, ପିଲା ବୁଢ଼ା, ବୁଢ଼ୀ, ଭୁଆଷୁଣୀ ଅନେକେ ଆସି ତାଙ୍କ ଘରେ ଜମା ହୋଇଗଲେ । କିଏ କେତେ ପ୍ରକାର ମୁହଁ ସହାନୁଭୂତି ଦେଖାଇଲେ, କେତେ ମାଇପି ଆଖିରୁ ଲୁହ ଗଡ଼ାଇ ପକାଇଲେ । କିଏ ଝିଅର ରୂପ ଗୁଣ କଥା, କିଏ ଜ୍ୱାଇଁର ରୂପ ବୟସ ଓ ବିଦ୍ୟା କଥା ବୟାନ କରି ବସିଲେ । ଅନେକ ଆସିଲେ,

ଅନେକ ଗଲେ । ଅନ୍ୟାନ୍ୟ ବାଳ ବିଧବା ଓ ସେମାନଙ୍କ ବାପ ମାଙ୍କ ଧୈର୍ଯ୍ୟ ପ୍ରଭୃତିର ନଜିର ଦେଇ ବହୁତ ସାନ୍ତ୍ୱନା ମଧ୍ୟ ଦେଲେ । ଏହିପରି ବହୁତ ଗହଳ କରି ସାରି ସମସ୍ତେ ଗୋଟି ଗୋଟି ହୋଇ ବିଦାୟ ନେଲେ । ବିଦାୟ ନେବା ବେଳକୁ ଯେ ସମସ୍ତଙ୍କର ସମଦୁଃଖିତା ବା ସହାନୁଭୂତି ଶେଷ ହୋଇ ଯାଇ-ଥିଲା ତାହା କୁହାଯାଇ ନ ପାରେ ; କାରଣ ସେ କଥା କାହା ମୁହଁରୁ ପ୍ରକାଶ ପାଇ ନାହିଁ । କେହି ଧାନ ଶୁଖାଇବା, କିଏ ପାଣି ଆଣିବା, କିଏ ବା ପିଲାକୁ ହଳଦି ଦେବା, କିଏ ବା ପଶା ଖେଳିବା ପ୍ରଭୃତି କର୍ତ୍ତବ୍ୟ ଏବଂ ଅତ୍ୟାବଶ୍ୟକ କାର୍ଯ୍ୟ ବଶତଃ ବାଧ୍ୟ ହୋଇ ଶତପଥୀଙ୍କ ଘର ଛାଡ଼ିଲେ । ଯିବାବେଳେ କେହି କେହି ସାବିତ୍ରୀର ନୂତନ ବିଧବା ରୂପଟି କିପରି ଦିଶୁଛି ତାହା କୌଣସି ବାହାନାରେ ଦେଖି ଦେଇ ଯିବାକୁ ଭୁଲି ନ ଥିଲେ ।

ହରି ଶତପଥୀଙ୍କ ସଂସାର ସରିଗଲା । ଏକମାତ୍ର ଝିଅ ସାବିତ୍ରୀର ସୁଖ ଟିକିଏ ଦେଖି ଜୀବନ ସାଙ୍ଗ କରିବେ ବୋଲି ଶତପଥୀ ଦମ୍ପତି ବଡ଼ ଆଶା କରି ବସିଥିଲେ ; ବହୁତ କଷ୍ଟରେ ସୁଶୀଳ ବିଦ୍ୟାବନ୍ତ ପାତ୍ରଟିଏ ଖୋଜି ସ୍ଥିର କରି ସାବିତ୍ରୀକୁ ଯେଉଁ ଦିନ ବିଭା ଦେଲେ, ସେ ଦିନ ତାଙ୍କ ଦୁହିଁଙ୍କର ଆନନ୍ଦର ସୀମା ନ ଥିଲା । ସେମାନଙ୍କର ଦାରିଦ୍ର୍ୟ, ସେମାନଙ୍କ ଅପୁତ୍ରକତ୍ୱ ଚିନ୍ତା କାହିଁ କେଉଁ ଦୂର ଦେଶକୁ ଘୁଞ୍ଚି ଯାଇଥିଲା । ସେମାନଙ୍କର ରୂପବତୀ ଗୁଣବତୀ କନ୍ୟାଟିକୁ ରୂପବନ୍ତ ପାତ୍ରଟିରେ ପାତ୍ରସ୍ଥ କରି ସେମାନେ ମୋକ୍ଷ ସୁଖ ଅନୁଭବ କଲେ ।

କିନ୍ତୁ ସେମାନଙ୍କର ଭାଗ୍ୟଲିପି ଅନ୍ୟ ପ୍ରକାର ; ତାଙ୍କର ନୟନପିତୁଳୀ ଦଶବର୍ଷ ବୟସ୍କା ସାବିତ୍ରୀ ଉପରେ ଅତି ଅପ୍ରତ୍ୟାଶିତ ଭାବରେ ବୈଧବ୍ୟ ବଜ୍ର କାହୁଁ ଆସି ପଡ଼ିଗଲା । ସେମାନେ ସମ୍ବାଦଟାକୁ ବିଶ୍ୱାସ କରିପାରିଲେ ନାହିଁ । ତାଙ୍କର ଦୁଃଖ ଶୋକ ଭିତରେ ମଧ୍ୟ ଅବିଶ୍ୱାସ ଏବଂ ସନ୍ଦେହ ତାଙ୍କ ଦୁଃଖ ଶୋକକୁ ରୋଧ କରି ଦେଉଥାଏ । କିନ୍ତୁ ଯେତେବେଳେ ସାବିତ୍ରୀର ନିରାଭରଣ ବୈଧବ୍ୟ ରୂପ ସେମାନେ ସ୍ୱଚକ୍ଷୁରେ ଦେଖିଲେ, ସେତେବେଳେ ସେମାନଙ୍କର ସନ୍ଦେହର ଅଣୁମାତ୍ର ରହିଲା ନାହିଁ । ବାପମାଙ୍କର ମୂର୍ଦ୍ଧନା ପାତ ହୋଇଗଲା । ଶତପଥୀ ପାଗଳ ହୋଇଗଲେ, ଶତପଥୀ-ରମଣୀ ଚେତନାହୀନ ହୋଇ ପଡ଼ି ରହିଲେ ।

ସାବିତ୍ରୀର ଗୋଟିଏ ଦୁର୍ଗୁଣ କେହି କେବେ ଦେଖି ନାହିଁ । ଗାଁରେ ଆଉ ଆଉ କଳିହୁଡ଼ୀ, ଅସୁନ୍ଦରୀ, ଅଣ୍ଡିରଚଣ୍ଡୀ ଟୋକୀଏ ସାବିତ୍ରୀର ଗୁଣଗାନ

ଆଦ୍ୟଠାରୁ ଶୁଣି ଈର୍ଷ୍ୟାରେ ସହି ନ ପାରୁଥିଲେ ମୁଦ୍ଧା ଗୋଟିଏ ଦୁର୍ଗୁଣ ବା ଦୋଷର ଆରୋପ କରି ଆତ୍ମ ପ୍ରସାଦ ପାଇବାର ସୁବିଧା ପାଉ ନ ଥିଲେ । ତେବେ ଖୁବ୍ ଅସହ୍ୟ ହେଲା ବେଳେ କହି ଦେଉଥିଲେ "ଯେତେହେଲେ ଶତପଥୀ ଘର ଝିଅ, ଆଉ ଓଟା ଘର ବୋହୂ ତ ?" ସାବିତ୍ରୀର ଗୋଟାଏ ମାତ୍ର ବଡ଼ କଳଙ୍କ ଯେ, ସେ ନୀଚ ଶ୍ରେଣୀୟ ବ୍ରାହ୍ମଣ ଶତପଥୀ ଘର ଝିଅ ଓ ହୋତାଘର ପୁତ୍ରବଧୂ । ଏ କଳଙ୍କରେ ସାବିତ୍ରୀ ଅପମାନିତା ହେବାର ଦେଖା-ଯାଏ ନାହିଁ । କିନ୍ତୁ କହିବା ଲୋକଙ୍କର ଟିକିଏ ଆନନ୍ଦ ଏବଂ ସମ୍ମାନ ହୁଏ ବୋଲି ଅନୁମାନ ହୁଏ ।

ସାବିତ୍ରୀର ବୈଧବ୍ୟ ଯେତିକି ଯେତିକି ପୁରୁଣା ହୋଇ ଆସିଲା, ଗାଁ ଲୋକଙ୍କର ତଦ୍ ବିଷୟକ ଚିନ୍ତା ସେତିକି ଊଣା ହୋଇ ଆସିଲା । କିନ୍ତୁ ସାବିତ୍ରୀ ଓ ତା'ର ମା ବାପଙ୍କର ଚିନ୍ତା ବେଳକୁ ବେଳ ଘନୀଭୂତ ହୋଇ ପଡ଼ିଲା । ଆସନ୍ନଯୌବନା କନ୍ୟାର ବୈଧବ୍ୟ ଦୁଃଖ ସେମାନଙ୍କର ଅନ୍ତର୍ଦ୍ଦେଶକୁ ଟିକି ଟିକି କରି କରତିବାକୁ ଲାଗିଲା । ସେ ବିଷୟରେ ସେମାନେ ଯେତିକି ଭାବିଲେ ଯାତନା ସେତିକି ବଢ଼ିବାକୁ ଲାଗିଲା । ଏହା କେଉଁ ପାପର ଫଳ, ଏ ପାପର ପ୍ରାୟଶ୍ଚିତ୍ତ କଣ ହୋଇପାରେ, ଭାବି ନିଶ୍ଚୟ କରି ପାରିଲେ ନାହିଁ । ସାବିତ୍ରୀର ବୈଧବ୍ୟ ନିରାକରଣ କରିବା ପାଇଁ ଯେଉଁ ପ୍ରାୟଶ୍ଚିତ୍ତର ବିଧାନ ହୁଅନ୍ତା, ସେମାନେ ତାହା କରିବାକୁ ପ୍ରସ୍ତୁତ ହୁଅନ୍ତେ । କିନ୍ତୁ ହାୟ, ବୈଧବ୍ୟରୁ ନିଷ୍କୃତି ପାଇଁ ପ୍ରାୟଶ୍ଚିତ୍ତ ନାହିଁ । ନିଜେ ଈଶ୍ୱର ମଧ୍ୟ ବୈଧବ୍ୟର ପ୍ରତିକାର ପାଇଁ ଅକ୍ଷମ ।

ଶତପଥୀଙ୍କର ହୃଦୟ ପଥର ହୋଇ ଆସିଲା । ସେ ଗୋଟିଏ ନୂଆ ବିଚାର କରି ବଡ଼ ଦୃଢ଼ ହୋଇ ବସିଲେ । ବଡ଼ ସଦମ୍ଭ ହୃଦୟରେ ସାବି ବୋଉକୁ ଡାକି କହିଲେ "ଏଆଡ଼େ ଆସ, ଶୁଣ ।"

ଶତପଥୀ ସ୍ତ୍ରୀ ଲୁହ ପୋଛି, ଅତି ଧୀର ଗତିରେ ଆସି ଠିଆ ହେଲେ । ଶତପଥୀ କହିଲେ, "ମୁଁ ସାବିକୁ ଆଉ ଥରେ ବିଭା ଦେବି । ବିଧବା ବିବାହ ତ ଚଳିଲାଣି, ମୁଁ ସେଇୟା କରିବି ।"

ସାବି ବୋଉଙ୍କ ହୃଦୟ କୋହରେ ପୂରିଗଲା । ସେ ଦଣ୍ଡେ ଯାଏଁ କାନ୍ଦି କାନ୍ଦି କିଛି କହି ପାରିଲେ ନାହିଁ । କଣ ଉତ୍ତର ଦେବେ ଭାବି ପାରିଲେ ନାହିଁ ।

ପୁଣି ଶତପଥୀ କହିଲେ, "ନା, ମୁଁ ନିଶ୍ଚେ ସାବିକି ବିଭା ଦେବି ।"

ସାବି ବୋଉ—"ତେମେ କହୁଚ ଯେ, ଏ ଗାଁ ଲୋକେ ବାକୀ ରଖିବେ ? ଆମକୁ ଗାଁରେ ଆଉ ରଖି ଥୋଇ ଦେବେ ।"

ଶତପଥୀ—"ଯାହା କରିବେ କରନ୍ତୁ, ମୁଁ ନିଶ୍ଚେ କରିବି । ସାବିକି ବିଭା ଦେଇ ସାରିବା ପରେ ମୋତେ ସେମାନେ ମାରି ଦିଅନ୍ତୁ ପଛେ, ମୋର ସେଥିକି ଖାତର ନାହିଁ ।"

ସାବି ବୋଉଙ୍କର କୋହ ଆହୁରି ପ୍ରବଳ ହେଲା, ସାବିକୁ କୁଣ୍ଢେଇ ପକେଇ ଭେ ଭେ ତକା ପକାଇଲେ । ସାବିର ବୈଧବ୍ୟ ଦୁଃଖ, ସ୍ୱାମୀଙ୍କର ଭବିଷ୍ୟତ୍ ବିପଦ ଦୁଇଟି ଚିନ୍ତା ମଧ୍ୟରେ ପଡ଼ି ସେ କିଛି ସ୍ଥିର କରି ନ ପାରି ବେଶୀ ଅସ୍ଥିର ହୋଇ ପଡ଼ିଲେ । କେଉଟିକୁ ଉପେକ୍ଷା କଲେ ଚଳିବ, ସେ ସ୍ଥିର କରି ପାରିଲେ ନାହିଁ । କାନ୍ଦି କାନ୍ଦି ଶେଷରେ ଦୀର୍ଘ ନିଶ୍ୱାସ ପକାଇ କହିଲେ "ମହାପ୍ରଭୁ, ମୋତେ ମାରି ଦିଅ, ମୁଁ ଆଉ ସମ୍ଭାଳି ପାରିବି ନାହିଁ ।"

ବହୁତ ଅନୁନୟ ଅନୁରୋଧ ପରେ ଗାଁ ମହାଜନମାନଙ୍କର ସଭା ବସିଲା । ଆଜି ଶତପଥୀ ତାଙ୍କର ଅର୍ଜି ଦାଖଲ କରିବେ । ସଭାରେ ଗାଁଟା ଯାକର ବ୍ରାହ୍ମଣ ହାଜର, ମାଇପିମାନେ ଝରକା ବାଟେ ଶୁଣିବା ପାଇଁ ଠିଆ ରହିଚନ୍ତି, ପିଲାଗୁଡ଼ାକ ମଧ୍ୟ ସଭାଠାରୁ ଟିକିଏ ଅଲଗା ହୋଇ ବସିଛନ୍ତି ବା ବୁଲୁଚନ୍ତି । ଯାହାର କେବେହେଲେ ସଭାରେ ନାଁ ପଡ଼େନାହିଁ, ସେ ମଧ୍ୟ ଆଜି ସଭାରେ ମହାଜନ ହୋଇ ବସି ଯାଇଛି ।

ଶତପଥୀ ବେକରେ ଖଣ୍ଡିଏ ଗାମୁଛା ପକାଇ ଅତି ବିନୀତ ଭାବରେ ସଭାରେ ପ୍ରକାଶ କଲେ ଯେ, ସେ ତାଙ୍କର ବାଳବିଧବା କନ୍ୟାର ଦ୍ୱିତୀୟ ବିବାହ ଦେବାକୁ ଇଚ୍ଛା କରନ୍ତି, ସଭାପକ୍ଷରୁ ତାଙ୍କୁ ଅନୁମତି ଦିଆଯାଉ । କଥା ସରୁ ନ ସରୁଣୁ ଦଶ ପାଞ୍ଚଟା ବଡ଼ ପାଟି ତର୍ଜନ ଗର୍ଜନ କରି ଉଠିବାର ଶୁଣାଗଲା । ପଣ୍ଡିତ ବାଇଧର ବ୍ରହ୍ମା କହିଲେ "ରାମ୍, ରାମ୍, କି ପାପରୁ ଏ କଥା ମଣିଷ ଶୁଣିଲା ହେ ! ହଇ ହେ, ବ୍ରାହ୍ମଣ ଘରେ ବିଧବା ବିବାହ ହେବ ?" ଗାଁର ଧନିକ ସାହୁକାର ଭୀମ ଦାସେ କହିଲେ "ବିଧବା ଝିଅକୁ ଘରେ ସମ୍ଭାଳି ନ ପାରିଲେ, ବେଶ୍ୟା ସାଇରେ ଛାଡ଼ି ଦେଉନାହଁ ।" ନିଧି ରଥେ ଓ ବିଶି ମହାପାତ୍ରେ ଚଳି ଉଠି କହିଲେ "ଆମର ତ ଗଣ୍ଡ ଝିଅଗୁଡାକ ଥିଲେ, ଆମର କଣ ତାଙ୍କୁ ବିବାହ ଦେବାକୁ ବୁଦ୍ଧି ନ ଥିଲା ? ଏଡ଼େ ଅନ୍ୟାୟ କଥା ଆମେ କରନ୍ତୁ !! ଏ ଚଣ୍ଡାଳଟା କିରସ୍ତାନ ପରି କି କଥା କହୁଚି ହେ !!"

ହରି ଶତପଥୀ ପୁଣି ନମ୍ର ସ୍ୱରରେ କହିଲେ, "ଆପଣମାନେ ସମାଜରେ ମୋତେ ନ ଚଳାନ୍ତୁ ପଛକେ, ମୋ ଝିଅକୁ ବିବାହ ଦେବା ସମୟରେ ମୋତେ ବାଧା ନ ଦିଅନ୍ତୁ, ଏତିକି ମୋର ପ୍ରାର୍ଥନା ; ଯାହା ପାପ ହେବ, ତାହା ମୋର, ଆପଣଙ୍କର କିଛି ହେବ ନାହିଁ ।"

ସମସ୍ତେ କହି ଉଠିଲେ "ନା, ନା, ତା' ଏ ଗାଁରେ ହେବ ନାହିଁ । ଏ ଗାଁରେ ତ ଏତେ ବିଧବା ଥିଲେ ଓ ଅଛନ୍ତି, କେହି ଏପରି କରି ନ ଥିଲେ । ଏ ଗୋଟେ ନୂଆ ଭିଆଣ ଲଗେଇଚି ।"

ଶତପଥୀ ନିର୍ଭୀକ ଭାବରେ କହିଲେ "ଆଜ୍ଞାମାନେ, ଏ ଗାଁର ଯୁବତୀ ବିଧବାମାନଙ୍କର ଏତେ ଅନାଚାର ତ ସହୁଚନ୍ତି, ମୋର ଏ ଅନ୍ୟାୟଟା ଟିକିଏ ସହ୍ୟ କରନ୍ତୁ, ମୋତେ ବାଧା ଦିଅନ୍ତୁ ନାହିଁ ।"

ଶ୍ରାମ ଦାସେ ବଡ଼ ଉତ୍ତ୍ୟକ୍ତ ହୋଇ କହିଲେ, "କିରେ, ଯା ମୁହଁ ତ ବଢ଼ି ଯାଉଛି । ସମସ୍ତଙ୍କର ଗୋଇ ଖୋଳିବାକୁ ଆରମ୍ଭ କଲଣି । ଆମେ ଯାହାକୁ ସେପରି ଅନ୍ୟାୟ କରିବାର ଦେଖୁଛୁ, ତାକୁ ତ ଗାଁରୁ ବାହାର କରି ଦେଉଛୁ । ଏହା ବୋଲି ଯା ଝିଅକୁ ଆଉ ଗୋଟେ ବିଭ ହେବାକୁ ଅନୁମତି ଦେବୁ ? ତେବେ ଏ ଗାଁ ଆଉ ବାକୀ ରହିବ ?"

ଶେଷକୁ ଭରି ଘୋଘା ହେଲା । ବହୁତ ପାଟି ଭିତରେ ସବୁ କଥା ଶୁଭିଲା ନାହିଁ । ବଡ଼ତୁଣ୍ଡିଆ ଲୋକ। ରଥ କହିବାର ଶୁଣାଗଲା ଯେ "ପଛେ ଯାହା ହେବ ପଛେ । ମୁଁ ବଞ୍ଚିଥିବା ଯାକ ରଣ୍ଡ ବିଭାଏ ଏ ଗାଁରେ କରଇ ଦେବି ନାହିଁ ।" ଶେଷରେ ଗାଁ ଲୋକେ ସ୍ଥିର କଲେ, ବିଧବା ବିବାହ ମହା-ପାପ, ସମାଜ ଛାରଖାର ହୋଇଯିବ । ଏହା ପ୍ରଚଳିତ ହେଲେ ମାଇପେ ସ୍ୱାମୀମାନଙ୍କୁ ମାରି ଅନ୍ୟ ସ୍ୱାମୀ ଲୋଡ଼ିବେ । ଆଉ ବ୍ରାହ୍ମଣଙ୍କୁ କେହି ହାତ ଟେକିବେ ନାହିଁ, ପଇସାଟିଏ ମିଳିବ ନାହିଁ । ବ୍ରାହ୍ମଣଙ୍କୁ ଇତର ଲୋକେ ଚୁଗୁଲି କରିବେ । ଏକାଦଶୀ ବ୍ରତ, କାର୍ତ୍ତିକ ହବିଷ ସଂସାରରୁ ଉଠିଯିବ ।

ହରି ଶତପଥୀ ବଡ଼ ଦୁଃଖିତ ଭାବରେ ସଭାରୁ ଫେରିଲେ । ଫେରିବା ବେଳେ ତାଙ୍କୁ ବହୁତ ଲୋକେ ବଡ଼ ଅଭଦ୍ର ଭାବରେ ଗାଳି ଦେଉଥିଲେ । କିନ୍ତୁ ସେ ଦମ୍ଭର ସହିତ ଘର ଭିତରେ ପ୍ରବେଶ କଲେ । ଏସବୁ ଶୁଣି ସାବିବୋଉ ଓ ସାବି ଘର ମଧ୍ୟରେ କାନ୍ଦୁଥାନ୍ତି । କାଲେ ଶତପଥୀ ଉପରେ ମାଡ଼ ବୃଷ୍ଟି ହୋଇ-

ପାରେ, ଏହି ଆଶଙ୍କାରେ ସେମାନଙ୍କ ପ୍ରାଣ ଥରୁଥାଏ । ଶତପଥୀ ଆସି ଯିବାରୁ ମା ଝିଅ ବହୁତ କାନ୍ଦିଲେ, ଶେଷରେ ସାବିବୋଉ କହିଲେ, "ଚାଲ ଏ ଗାଁରୁ ପଳାଇ ଯିବା । ସେଣିକି ଯାହା କରିବ ।" ଶତପଥୀ 'ହୁଁ' ମାରି ତୁନି ହୋଇ ଭାବିବାକୁ ଲାଗିଲେ ।

ତିନି ଦିନ ପରେ ଗାଁରେ ଖବର ରଷ୍ଟ ହୋଇଗଲା ଯେ, ହରି ଶତପଥୀ ବର ଠିକ୍ କରି ସାରିଲେଣି । ସାବିର ବିଭାଘର କରିବ । ଗାଁ ଲୋକେ ଶୁଣି ଅସ୍ଥିର ହେଲେ । ଯେତେବେଳେ ହରି ଶତପଥୀଙ୍କ ଠାରୁ ସ୍ଥିର ସମ୍ବାଦ ଶୁଣିଲେ, ସେତେବେଳେ ଗାଁଟାଯାକ ମାତି ଉଠିଲେ । ସବୁଠାରୁ ବେଶୀ ରାଗରେ ଜଳି ଉଠିଲେ ଲୋକା ରଥ, ଧାମ ଦାସେ । ଏମାନେ ସଫା କହି-ଦେଲେ, ଏ ବିଭାଘର ତାଙ୍କ ଗାଁରେ ସେମାନେ କରାଇ ଦେବେ ନାହିଁ । ହରି ଶତପଥୀକୁ ଗାଁରୁ ବାହାର କରି ଦେବାକୁ ହେବ, ନଚେତ୍ କୌଣସି ମିଛ ଚୋରି ମକଦ୍ଦମାରେ ତାକୁ ଜେଲ ଦିଆଇ ବିଭାଘର ବନ୍ଦ କରି ଦେବାକୁ ହେବ ।

ହରି ଶତପଥୀ ଏସବୁ କଥା ଖାତିର ନ କରି ବିଭାଘରର ଆୟୋଜନ କରି ବସିଲେ । ତାଙ୍କର ଜୀବନର ଏହିଟି ଶେଷ ଅଧ୍ୟାୟ । ଏ ଗାଁ ଲୋକଙ୍କ ସମ୍ପର୍କ ସହାନୁଭୂତି ତାଙ୍କର ଆବଶ୍ୟକ ନାହିଁ । ସେ ତାଙ୍କର ହୃଦୟର ଅଭିଳଷିତ କାର୍ଯ୍ୟ କରିବେ । ଲୋକଙ୍କ ମତାମତ ପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ ।

ଗାଁ ଲୋକେ ଦେଖିଲେ ଯେ ବିଭାଘର ହୋଇଯିବ । ଆଉ ଉପାୟ କଣ ? ଲୋକାରଥ ଓ ଧାମଦାସ ଗାଁ ଲୋକଙ୍କୁ ମେଳ କରାଇ ଦିନେ ସନ୍ଧ୍ୟା-ବେଳେ ହରି ଶତପଥୀଙ୍କ ଦୁଆରେ ହାଜର ହେଲେ । ଭିତରୁ ଶତପଥୀଙ୍କୁ ଡାକ ପକାଇଲେ । ଶତପଥୀ ଘରୁ ବାହାରି ଆସିବାରୁ, ଜଣେ ଦୁଇଜଣ ତାଙ୍କୁ ଦୁଆର ତଳକୁ ଭିଡ଼ି ଆଣିଲେ । ସମସ୍ତେ ହୋହା କରି ଉଠିଲେ ଏବଂ ଶତପଥୀଙ୍କ ଉପରେ ହେଲା ମାଡ଼ର ବୃଷ୍ଟି । ବିଧା ଚାପୁଡ଼ା ଗୋଇଠାରେ ତାଙ୍କ ଦେହ ଚୁରି ହୋଇଗଲା । ଶେଷରେ ଅଚେତା କରି ପକାଇ ଦେଇ ସମସ୍ତେ ଚାଲିଗଲେ । ଚାଲି ଯିବାବେଳେ ସମସ୍ତେ ଆନନ୍ଦ ଓ ଗର୍ବ ଅନୁଭବ କରି କହୁଥିଲେ—"ରାଣ୍ଡ ଝିଅକୁ ବିଭା ଦବ ପରା, ଏଥର ଦଉ । ଏ ମାଡ଼ରେ ଯେବେ ନ ଡରିବ, ତେବେ ମକଦ୍ଦମା କରି ଜେଲ ଦିଆଇବା ।"

ଅନ୍ଧାରରେ ଶତପଥୀ ରମଣୀ ଯାଇ ଶତପଥୀଙ୍କୁ ଅଚେତା ଅବସ୍ଥାରେ ଟେକି ଆଣିଲେ । ସେ ରାତିଯାକ ଶତପଥୀଙ୍କର ଆଉ ଚେତା ହେଲା ନାହିଁ ।

( ୨ )

ତିନି ଚାରି ବର୍ଷ ବିତି ଗଲଣି । ଶତପଥୀଙ୍କ ଘରର ଭଗ୍ନାବଶେଷ ମାତ୍ର ରହିଅଛି । ଶତପଥୀ ପାଗଳ ହୋଇ ଯାଇଛନ୍ତି । ଦିନଯାକ ଗାଁ ଚାରିପାଖ ଏଣେତେଣେ ବୁଲି, ସନ୍ଧ୍ୟା ବେଳକୁ ସେ ଭଙ୍ଗା ଘରେ ଆସି ପଡ଼ି ରହନ୍ତି । କେଉଁଦିନ କେଉଁଠାରେ କଣ ଖାଆନ୍ତି, ତାର ଖବର କିଏ ନେଉଛି ? ଗାଁ ଲୋକେ ପାଗଳଟାର କଥା ବୁଝିବେ କିଆଁ ?

ଯେଉଁ ଦିନ ଶତପଥୀ ଗାଁ ଲୋକଙ୍କ ଠାରୁ ମାଡ଼ ଖାଇ ମୁମୂର୍ଷୁ ଅବସ୍ଥାରେ ଘରିଯାକ ପଡ଼ି ରହିଥିଲେ, ସେ ରାତିରେ ସାବିତ୍ରୀ ବାପାଙ୍କ ଅବସ୍ଥା ଦେଖିଲା । ଗାଁ ଲୋକଙ୍କ ମତିଗତି ବୁଝି ପାରିଲା । ହୃଦୟର ଦାହକୁ ଆଉ ସମ୍ଭାଳି ପାରିଲା ନାହିଁ । ଏ ଈର୍ଷ୍ୟା-ନିର୍ଦ୍ଦୟତା-ଜଡ଼ିତ ସଂସାରରେ, ସମାଜରେ ତାର ଆଉ ବଞ୍ଚିବାର ପ୍ରୟୋଜନ ନାହିଁ । ବାପା ତ ସଂସାରରୁ ଯାଉଛନ୍ତି । ତାର ବର୍ତ୍ତମାନ ବଞ୍ଚିବା ମରିବା ସମାନ । ଲୋକେ ସଂସାରରେ ବଞ୍ଚନ୍ତି କାହିଁକି ? ଜୀବନର ଉପଭୋଗ ପାଇଁ ତ । ଜୀବନର ଉପଭୋଗରେ ଯଦି ସମାଜ ବାଧା ଦେଲା, ତାର ଜୀବନ ସାଧନ ଯଦି ସମାଜରେ କଳଙ୍କ ବୋଲି ଦଣ୍ଡନୀୟ, ତେବେ ସେ ସମାଜରେ ତାର ଆଉ ସ୍ଥାନ କାହିଁ ?

ରାତି ପାହିବା ବେଳକୁ ସାବିର ମୃତ ଦେହ ଗାଁ ମୁଣ୍ଡ ପୋଖରୀରେ ଭାସୁଥିବାର ଦେଖାଗଲା । ତାର ଦିନେ ଦୁଇ ଦିନ ପରେ ସାବି ବୋଉର ମୃତ ଦେହ ହାଣ୍ଡିଶାଳ ଘରର ଶେଣୀରୁ ଝୁଲିଲା । ହରି ଶତପଥୀ ମାଡ଼ରୁ ଉତୁରି ତିନି ଚାରି ବର୍ଷ ହେଲା ବାୟା ହୋଇ ବୁଲୁଚି । ବ୍ରାହ୍ମଣମାନେ କହନ୍ତି 'ତା ଅନ୍ୟାୟ, ତା ପାପର ଫଳ ପାଇଲା ।'

( ୩ )

ରାମଦାସେ ଗାଁର ଧନୀ ଲୋକ । ମାନ ସମ୍ମାନ ତାଙ୍କର ଗାଁରେ ସବୁଠାରୁ ବେଶୀ । ତାଙ୍କ ଇଚ୍ଛା ବିରୁଦ୍ଧରେ କେହି କୌଣସି କାମଟାଏ କରିବାକୁ ସାହସ କରନ୍ତି ନାହିଁ । ସବୁ ଧନୀ ଲୋକଙ୍କ ପରି ଲୋକଟା ବଡ଼ ସ୍ୱାର୍ଥପର, ପରଶ୍ରୀକାତର । ପରର ଦୁଃଖ ଯାତନାରେ ତାଙ୍କର ବଡ଼ ଆନନ୍ଦ ହୁଏ । ଯେଉଁ ରୀତି ନୀତି ଦ୍ୱାରା ଅନ୍ୟ ଲୋକ ଅସୁବିଧାରେ ପଡ଼େ, ସେ ଲୋକର ସୁରକ୍ଷା ପାଇଁ

ତାଙ୍କର ଭଳି ଦୃଢ଼ ନଜର । କେହି ବ୍ରାହ୍ମଣ ଦୋକାନ ଖଣ୍ଡେ ବା ବ୍ୟବସାୟଟାଏ ଆରମ୍ଭ କରିବାକୁ ବସିଲେ ଦାସେ ବାଧା ଦିଅନ୍ତି । ବିଦେଶକୁ ଯାଇ କିଏ କି ଉପାୟରେ ଅର୍ଥ ଅର୍ଜନ କରନ୍ତି, ତାର ଓର ଖୋଜି ଅନ୍ୟାୟଟାଏ ବାହାର କରି ତାକୁ ଜାତି ବାସନ୍ଦ କରି ପ୍ରାୟଶ୍ଚିତ୍ତ କରନ୍ତି । ତାଙ୍କର ଅଭିଳାଷ—ଗାଁରେ ତାଙ୍କପରି ଧନୀ, ମାନୀ ଓ ବଳବାନ୍ କେହି ଆଉ ନ ହୁଅନ୍ତୁ । ତାଙ୍କରି ଶିକ୍ଷା ଓ ପ୍ରରୋଚନାରେ ହରି ଶତପଥୀର ସଂସାର ଭାଙ୍ଗିଗଲା । ବିଧବା ବିବାହଟା ବନ୍ଦ କରାଇ ଦେଲେ ବୋଲି ସେ କେତେଥର ତାଙ୍କ ବାହାଦୁରୀ ପ୍ରକାଶ କରିଛନ୍ତି ।

ବିପଦ ଲୋକ ଉପରେ କିପରି ଭାବରେ କେତେବେଳେ ଆସି ପଡ଼େ, ତାହା ସେ ଜାଣିପାରେ ନାହିଁ । ଧାର୍ମିକ ଶ୍ୟାମ ଦାସଙ୍କ ଉପରେ ଆଜି ଅକାଳ ବଜ୍ର ପଡ଼ିଗଲା—ହଠାତ୍ ସମ୍ବାଦ ଆସି ପହଞ୍ଚିଲା, ତାଙ୍କ ସାନ ଜ୍ୱାଇଁଟି ଆଉ ନାହିଁ । ଦାସଙ୍କ ସାନ ଝିଅ ଲକ୍ଷ୍ମୀ ଶାଶୁ ଘରକୁ ପହିଲି ପାଳି ଯିବାର ଯୋଗାଡ଼ ହେଉଥିଲା । ଧନୀର କନ୍ୟା । ଦାସଙ୍କର ଅନ୍ୟାନ୍ୟ ଦୁର୍ଗୁଣ ସତ୍ତ୍ୱେ ସନ୍ତାନ-ସ୍ନେହ ଅତି ବେଶୀ ଥିଲା । ତା ଛଡ଼ା ତାଙ୍କ ସର୍ବଶେଷ ସନ୍ତାନ ଲକ୍ଷ୍ମୀକୁ ସେ ପ୍ରାଣଠୁ ବଳି ଭଲ ପାଉଥିଲେ । ଲକ୍ଷ୍ମୀ ସୁନ୍ଦରୀ ଓ ଗୁଣବତୀ । ଗୋଟିଏ ଧନୀ ପରିବାରରେ ବିବାହ ଦେଇ ଦାସେ ବଡ଼ ସନ୍ତୋଷରେ କାଳ କଟାଉଥିଲେ । କିନ୍ତୁ ଜାମାତାର ଏ ଆକସ୍ମିକ ମୃତ୍ୟୁ ସମ୍ବାଦରେ ତାଙ୍କର ହୃଦୟ ଭାଙ୍ଗିଗଲା । ତାଙ୍କ ଘରେ ତିନିଦିନ କାଳ ଚୂଲି ଜଳିଲା ନାହିଁ ।

ଶ୍ୟାମ ଦାସେ ଧାର୍ମିକ, ନିଜକୁ ବଡ଼ ଭାଗ୍ୟବାନ୍ ମନେ କରନ୍ତି । କୌଣସି ବିପଦ ବା ଦୁର୍ବିପାକ ତାଙ୍କ ଭାଗ୍ୟରେ ଘଟିବ, ଏ କଥା ସେ କଳ୍ପନା କରି ପାରନ୍ତି ନାହିଁ । ବିଧବା-ବିବାହର ସେ ବଡ଼ ବିରୋଧୀ । ତା ବିରୁଦ୍ଧରେ ସେ ବହୁତ ଯୁଦ୍ଧ କରିଛନ୍ତି । ବିଧବାମାନଙ୍କୁ ପୁନର୍ବିବାହ ଦେଲେ ସମାଜର ଭଲ ବା ମନ୍ଦ କେତେ ପରିମାଣରେ ଘଟିବ, ସେ ଏ କଥା କେବେ ହିସାବ-କିତାପ କରିବାକୁ ଯାଇ ନାହାନ୍ତି । ତାଙ୍କ କହିବାର କଥା ଗୋଟାଏ କଥା ଚଳି ଆସୁଛି, ତାଙ୍କର ସେଥିରେ କିଛି କ୍ଷତି ହୋଇ ନାହିଁ, ହେଉ ନାହିଁ ଏବଂ ଭବିଷ୍ୟ ବଳରୁ ମଧ୍ୟ ହେବ ନାହିଁ । ତା ସଙ୍ଗେ ବିଧବାମାନଙ୍କର ଏବଂ ସେମାନଙ୍କ ବଂଶର ଭାଗ୍ୟହୀନତା ଏବଂ କଷ୍ଟ ତାଙ୍କର ସୁଭଗମ୍ମନ୍ୟତା ଏବଂ ଆନନ୍ଦକୁ ବଢ଼ାଏ । ସେଥିପାଇଁ ସେ ଗ୍ରାମର ପ୍ରଭାବଶାଳୀ ଲୋକ ଭାବରେ ବିଧବା-ବିବାହକୁ ବାଧା ଦେଇ ଆସି ଅଛନ୍ତି । ବିଧବାମାନଙ୍କର ସମାଜରେ କି କଷ୍ଟ

ହୁଏ, ସେମାନଙ୍କ ଆର୍ଥିକ ହୀନତା କି ଶୋଷଣ, ସେମାନେ କିପରି ଅନାଦୃତା, ଅତ୍ୟାଚରିତା, ସେମାନଙ୍କର ଚରିତ୍ର ଓ ଜୀବନ କିପରି ଭବରେ ନିଜଦ୍ୱାର ଓ ପରଦ୍ୱାର ପ୍ରତିଦିନ ଧ୍ୱସ୍ତ ବିଧ୍ୱସ୍ତ ହେଉଅଛି, ତାହା ତାଙ୍କର ବିଚାର କରିବାର କି ଲୋଡ଼ା ? ନିଜର ସ୍ୱାର୍ଥକୁ ଷୋଳଅଣା ଜଗିରଖି ସେ ସଂସାରରେ ଆଜିଯାଏ ଚଳି ଆସୁଥିଲେ ।

ଏବେ ତାଙ୍କର ସବୁ ସୁଖ ଲୁପ୍ତ ହୋଇ ଯାଇଛି, ସବୁ ସ୍ୱପ୍ନ ଉଭେଇ ଯାଇଛି, ନିଜର ସୌଭାଗ୍ୟ କଳ୍ପନା ଦୂର ଦେଶକୁ ଚାଲି ଯାଇଅଛି । ନିଜ ଘରେ ନିଜର ଅତ୍ୟନ୍ତ ସ୍ନେହ-ପାଳିତା ସୁନ୍ଦରୀ ଗୁଣବତୀ ବିଧବା ଝିଅକୁ ଦେଖି ତାଙ୍କର ହୃଦୟ ଅହରହ କାନ୍ଦି ଉଠୁଛି । ତାର ଭବିଷ୍ୟତ କଣ ହେବ, ସେ କିପରି ଚଳିବ, ସେ କିପରି ବଞ୍ଚିବ ? ତାକୁ ଏପରି ହୀନହୀନ ରୂପେ ବଞ୍ଚିବାକୁ ବାଧ୍ୟ କରିବାର କି କାରଣ ଅଛି ? ସେ ଅପରାଧ କରିଛି, ସେ ଅନ୍ୟାୟ କରିଛି ? ନା, ତାର ଜୀବନ କଣ ଏପରି ହେୟ ପଦାର୍ଥ ଯେ, ସମାଜ ତାକୁ ଏପରି କଦର୍ଯ୍ୟ ଭବରେ କଟାଇବାକୁ ବାଧ୍ୟ କରିବ ? ନା, ସମାଜର ଏ ଅତ୍ୟାଚାର ଅସହ୍ୟ । ସମାଜର ଏ ଅନ୍ୟାୟ ବନ୍ଧନ ଛିଣ୍ଡାଇବାକୁ, ଏ ଅକାରଣ ଅତ୍ୟାଚାର ଦୂର କରିବାକୁ ହେବ ।

ଶ୍ୟାମ ଦାସଙ୍କ ସ୍ତ୍ରୀ ଦାସଙ୍କ ସହିତ ଏକମତ ଯେ, ସେମାନେ ସମ୍ପତ୍ତିରୁ ଚଉଠେ ଦେଇ ଅନ୍ୟ ସ୍ୱାମୀ ଆଣି ଲକ୍ଷ୍ମୀକୁ ଆଉ ଥରେ ବିବାହ ଦେବେ । ସେ ଗାଁ ଲୋକଙ୍କ କଥା ଶୁଣିବେ ନାହିଁ, ବନ୍ଧୁବାନ୍ଧବଙ୍କ ମତକୁ ଭ୍ରୂକ୍ଷେପ କରିବେ ନାହିଁ । ଲକ୍ଷ୍ମୀକୁ ବିଧବା ରଖି ଜୀବନର ଅବଶିଷ୍ଟ କେତେଟା ଦିନ ନରକ ଯନ୍ତ୍ରଣା ଭୋଗି ରହିବା ଅସମ୍ଭବ । ଯାହା ହେବାର ହେଉ, ସେମାନେ ଅତୀତ ଭୁଲି, ଭବିଷ୍ୟତକୁ ଭୟ ନ କରି ଲକ୍ଷ୍ମୀର ପୁନର୍ବିବାହ କରାଇବେ ।

ଶ୍ୟାମ ଦାସଙ୍କର ଅଭିଳାଷ ସମସ୍ତଙ୍କ କାନକୁ ଆସିଗଲା । ଶ୍ୟାମଦାସେ ଧନୀ ବୋଲି ତାଙ୍କ କଥା ସେ କରାଇ ନେଉଥିଲେ । କିନ୍ତୁ ଏ କଥାଟି କରାଇ ନେବା ଅସମ୍ଭବ ହେଲା । ସମସ୍ତ ଗାଁ ଲୋକଙ୍କର ଅମତ ହେଲା । ହେବାର ମଧ୍ୟ କଥା, କାରଣ ଦାସ ଦମ୍ପତିଙ୍କ ମାନସିକ ଦୁଃଖ ଓ ଲକ୍ଷ୍ମୀର ଜୀବନର ଯାତନା ଅନ୍ୟ କେହି ତ ଅନୁଭବ କରୁ ନାହିଁ ବା କଳ୍ପନା କରିବାର ପ୍ରୟୋଜନ ତ ପଡ଼ୁ ନାହିଁ । ଆଜିଯାଏ ଦାସଙ୍କର ପାଳି ପଡ଼ିଥିଲା, ଆଜି ଦାସେ କୂଅରେ ପଡ଼ିଗଲେ, ଅନ୍ୟମାନଙ୍କ ପାଳି ପଡ଼ିଗଲା, ସମସ୍ତେ ଟେଳେ ଟେଳେ ମାରିବାକୁ ଆରମ୍ଭ କଲେ । ଦାସେ ଯେପରି ସ୍ୱାର୍ଥପର, ସ୍ୱାର୍ଥସର୍ବସ୍ୱ, ଅନ୍ୟମାନେ ସେହି ଶ୍ରେଣୀର ।

ସେମାନଙ୍କର ସହାନୁଭୂତି ନାହିଁ, କୃପା ନାହିଁ ବା ବିଗ୍ରର ନାହିଁ । ଅନେକ ଗାଁ ବ୍ରାହ୍ମଣ ପ୍ରତିଶୋଧ ପାଇଁ ଆଗେଇ ଆସିଲେ । ଦାସଙ୍କ ପ୍ରରୋଚନାରେ କେତେ ଲୋକଙ୍କର ଘରୁ କେତେ ବିଧବା ତଡ଼ା ପାଇଛନ୍ତି, କେତେ ବ୍ରାହ୍ମଣ ଅର୍ଥ ବ୍ୟୟ କରି ପ୍ରାୟଶ୍ଚିତ୍ତ କରି ସମାଜରେ ରହିଛନ୍ତି, କେତେ ବଂଶ ମଧ୍ଯ ସର୍ବସ୍ୱହୀନ ହୋଇଛି । ହରି ଶତପଥୀ ବଂଶ ତ ତିନି ପାଞ୍ଚିରୁ ଗଲା । ଦାସେ କଣ ଏଡ଼େ ସିଆଣିଆ ଯେ ନିଜ କୃତକର୍ମର ଫଳରୁ ଟିକିଏ ଭୋଗିବେ ନାହିଁ ?

ସମସ୍ତେ କହିଲେ, "ନା, ସେ କଥା ହେବ ନାହିଁ । ଶ୍ରୀମ ଦାସ ବିଭଘର କଲେ ତାକୁ ସାଗ କରିଦେବା । ସେ କଣ ଆମକୁ ସବୁ ଏଡ଼େ ଓଲୁ ଦେଖୁଚି ?"

ବିଭଘର କାଲି ହେବ । ଦାସେ ଅନ୍ୟର ସହାୟତା ନ ପାଇ ମଧ୍ଯ ବିଭଘରର ଆୟୋଜନ କରୁଛନ୍ତି । ଜ୍ୱାଇଁ କାଲି ବିଭ ହେବାକୁ ଆସିବ । ଗାଁ ଲୋକେ କେହି ପାଖ ପଶୁ ନାହାନ୍ତି । ସେମାନେ ଭିତରେ ଭିତରେ କଣ ଚୁପ୍ ଚୁପ୍ କଥାବାର୍ତ୍ତା ହେଉଛନ୍ତି । କଣ କଥାବର୍ତ୍ତା ହେଉଛନ୍ତି କେଜାଣି ?

ରାତି ଦୁଇ ପ୍ରହର ସମୟରେ ଶ୍ରୀମ ଦାସଙ୍କ ଘରେ ନିଆଁ ଲାଗିଲା । ୨୦ ମିନିଟ ମଧ୍ଯରେ ଏଡ଼େ ବଡ଼ ଘରଟା ପାଉଁଶ ଗଦା ହୋଇଗଲା । ଗାଁ ଲୋକେ ଦୁଇପାଖେ ଜଗାଜଗି କରିଦେଲେ । ଆଉ କାହା ଘର ପୋଡ଼ି ନାହିଁ । ଲକ୍ଷ୍ମୀ କେଉଁଠାରେ ରହିଗଲା, ଖୋଜି ଖୋଜି ପତ୍ତା ମିଳିଲା ନାହିଁ । ସକାଳୁ ଦେଖିବା ସମୟକୁ ଶ୍ରୀମ ଦାସଙ୍କ ଘରର ଭଲ ଭଲ ସମ୍ପତ୍ତିତକ ଥିବା ସ୍ଥାନରେ ନାହିଁ । ଶ୍ରୀମଦାସେ କିଏ ନେଇଗଲା ବୋଲି କହୁଛନ୍ତି ଓ ଲକ୍ଷ୍ମୀକୁ ପାଉଁଶ ଆଡ଼େଇ ଖୋଜୁଛନ୍ତି । ଗାଁ ଲୋକେ ଚୁପ୍ ଚୁପ୍ ରହିଲେ । ପୋଲିସ ଆସି ଖୋଜାଇ-ବାରେ ଶୋଇବା ଘର ପାଉଁଶ ତଳୁ ଲକ୍ଷ୍ମୀର ସିଝା ଦେହ ବାହାରିଲା । ଟଙ୍କା ସୁନା ସମ୍ପତ୍ତି କିଛି ମିଳିଲା ନାହିଁ । ପୋଲିସ କିଏ ନେଇ ଯାଇଛି ବୋଲି ସନ୍ଦେହ କଲା । ଗାଁ ଲୋକେ ଏକ ସ୍ୱରରେ କହିଲେ "ଦାସଙ୍କର ସେପରି ସମ୍ପତ୍ତି କିଛି ନ ଥିଲା । ସେ ବିପଦରେ ପାଗଳ ହୋଇ ଏପରି କହୁଛନ୍ତି ।"

ପାଗଳ ହରି ଶତପଥୀ ଆଜି ଶ୍ରୀମ ଦାସଙ୍କ ଦୁଆରେ ଠିଆ ହୋଇ ବହୁତ ଗୁଡ଼ାଏ ବାୟା ପରି ହସିଲା । ଶେଷରେ ଶ୍ରୀମ ଦାସଙ୍କୁ ଘରୁ ବାହାରିବାର ଦେଖି କୁଣ୍ଢାଇ ପକାଇଲା ଓ ଭେ ଭେ କରି କାନ୍ଦି ପକାଇଲା । ଦାସେ ମଧ୍ଯ କାନ୍ଦି ପକାଇଲେ ।



# ମୁକ୍ତି

(ନବ ଭରତ, କୁମ୍ଭ ୧୩୪୧)

ସ୍କୁଲରୁ ଫେରିବାଠାରୁ ରାତି ପାହିବା ପର୍ଯ୍ୟନ୍ତ ସମୟତକ ମାଧିଆର ଭଲରେ କଟିଯାଏ । ସ୍କୁଲରୁ ଫେରିଆସି ବହି ସିଲଟ ଓ ପିନ୍ଧାଲୁଗା ଖଣ୍ଡେ ଘରେ ଫିଙ୍ଗି ଦେଇ ଦେ ଦୌଡ଼ ଖେଳଜାଗାକୁ । ଖେଳ ଜାଗାରେ ନରିଆ, ଲିଙ୍ଗା, ସେବତୀ, ହୀରା ପ୍ରଭୃତି ଅନେକ ପିଲା ଆଗରୁ ରୁଣ୍ଡ ହୋଇଥାନ୍ତି । କେଉଁଦିନ ବୁଢ଼ୀଆଣୀ, କେଉଁଦିନ ବଡ଼ମଣ୍ଡା ସାନମଣ୍ଡା, କେଉଁଦିନ ବା କା' କା', କାଠି-ପୋତା ପୋତି, ଡୁଡୁ ଏହିପରି ଅନେକ ଖେଳ ହୁଏ । ଦିନେ ଦିନେ ତା'ପରେ ତିନି ଚାରିଟା ଖେଳ ହୋଇଯାଏ । କେଉଁ କେଉଁ ଦିନ ଦଣ୍ଡଯାତ୍ରା, କେଉଁ ଦିନ ବିଭାଘର, କେଉଁଦିନ ଦୋକାନଦିଆ, ଘୋଡ଼ା ଦୌଡ଼, ଛେଳିଧରା, ମାଙ୍କଡ଼-ତଡ଼ା ପ୍ରଭୃତି କାମ ଲାଗିଯାଏ । ଏଗୁଡ଼ିକ ହେଉଚି ମାଧିଆର ପ୍ରାଣ, ସର୍ବସ୍ୱ । ଏଗୁଡ଼ିକ ହିଁ ତା'ର ଜୀବନର ସ୍ୱପ୍ନ ଏବଂ କାର୍ଯ୍ୟ । ଏହାପାଇଁ ସେ ଘର ଭୁଲି-ଯାଏ, ଖାଇବା ଶୋଇବା ଭୁଲିଯାଏ । ସାଙ୍ଗ ପିଲାଙ୍କ ବାପ ମା ଏବଂ ନିଜ ବାପ ମାଙ୍କ ଆଟକ ଏବଂ ବାଧା ଯୋଗୁଁ ସେ ଖେଳ ଛାଡ଼ିବାକୁ, ଖାଇବା ଶୋଇବା କାର୍ଯ୍ୟ କରିବାକୁ ବାଧ୍ୟ ହୁଏ । ସେ ଯେତେବେଳେ ଏକାକୀ ରହିବାକୁ ବାଧ୍ୟ ହୁଏ ସେତେବେଳେ ମଧ୍ୟ ନିଜେ ନିଜେ କୌଣସି ଖେଳର ସୃଷ୍ଟି କରି ସେଥିରେ ଲାଗିଥାଏ, କିମ୍ବା ପିଲାମାନଙ୍କ ସଙ୍ଗରେ ଯେଉଁ ଖେଳ ଖେଳିବ ତା'ରି କଳ୍ପନାରେ ଲାଗିଥାଏ ।

ପ୍ରାୟ ବର୍ଷେ ହେଲା ତାହାର ଜୀବନ ବଡ଼ ବିପଦଗ୍ରସ୍ତ ହୋଇ ପଡ଼ିଛି । ମାଧିଆର ବାପ ତାକୁ ଗାଁ ଇସ୍କୁଲରେ ଭର୍ତ୍ତି କରି ଦେଇ ଆସିବା ଦିନୁ ତାର ସମସ୍ତ ସୁଖ ସରିଯାଇଛି । ସେ ଯେଉଁଦିନ ନୂଆଲୁଗା ପିନ୍ଧି ଛତା ଧରି ଇସ୍କୁଲକୁ

ବାପ ସଙ୍ଗେ ଗଲା ସେଦିନ ତାର ଭରି ଆନନ୍ଦ ହୋଇଥିଲା । ଭବିଥିଲା ଇସ୍କୁଲକୁ ବହୁତ ପିଲା ଯାଉଛନ୍ତି, ବହୁତ ଖେଳ ହେଉଥିବ । ଯାଇଁ ଦେଖିଲା ସେଠାରେ ବେଞ୍ଚ, ଚୌକି, ଟୁଲ୍ ପ୍ରଭୃତି ରହିଚି । ପିଲାମାନେ ଧାଡ଼ି ଧାଡ଼ି ହୋଇ ବସି ପଢ଼ୁଛନ୍ତି । ସାଙ୍ଗପିଲା ରାମ, ଦାମ, ରଘୁ, ବିଶି, ଲୋଚନ ପ୍ରଭୃତିଙ୍କ ସଙ୍ଗେ ବସି ଭରି ଗପସପ କଲା, ହସ ଖେଳ କଲା । ଏହିପରି ଦୁଇ ଚାରି ଦିନ ଯିବା-ପରେ ମାଷ୍ଟରଙ୍କର କୋପଦୃଷ୍ଟି ତା ଉପରେ ପଡ଼ିଲା । ତାକୁ ପଢ଼ିବାକୁ ପଡ଼ିଲା । ଓହୋ, ସେ ପଢ଼ା କି କଷ୍ଟ । ଗୋଟିଏ ଜାଗାରେ ବସିଥିବ, କାହା ଆଡ଼କୁ ଚାହିଁବ ନାହିଁ, କେତୋଟା ଅକ୍ଷର ଉପରେ ଖଡ଼ି ଘୋଷାରୁଥିବ ! ଏ ଦୁଃଖ ପୁଣି ଅଳ୍ପ ସମୟ ପାଇଁ ନୁହେଁ—ସକାଳୁ ଯିବାଠାରୁ ଉପରଓଳି ଫେରିବା ପର୍ଯ୍ୟନ୍ତ । ସେଥି ମଧ୍ୟରେ ମାଷ୍ଟରେ ପାଠ ପଇଟିଲା କି ନାହିଁ ପଚାରିବେ । ନ ଆସିଲେ ବେତେ, ଚାପଡ଼େ ଖାଇବାକୁ ହେବ । ଏ ଦୁଃଖ ବେଳକୁ ବେଳ ମାଧିଆ ବଡ଼ ତୀବ୍ରଭବରେ ଅନୁଭବ କଲା । ଏ ଦୁଃଖର ସମାପ୍ତି କେଉଁ ଦିନ ହେବ, ସେ ଠିକ୍ ଜାଣି ନ ପାରି ଅନେକ ସମୟରେ କାନ୍ଦି ପକାଇଲା ।

ସକାଳୁ ରାତି ପାହିଲେ ମାଧିଆର ପାଠପଢ଼ା ଚିନ୍ତା ଆରମ୍ଭ ହୁଏ । ସ୍କୁଲକୁ ନ ଯିବାର ଚେଷ୍ଟା କଲେ ମଧ୍ୟ ସବୁ ବିଫଳ ; ଘରେ ବାପା ବାଧ କରିବ, ମା ମଧ୍ୟ ସେଥିରେ ସାହାଯ୍ୟ କରିବ । ଏତେ ସ୍ନେହୀ ବାପ ମା ଯେ କାହିଁକି ତାକୁ ଏତେ କଷ୍ଟ ଦେଉଛନ୍ତି ସେ କିଛି ବୁଝି ନପାରି ବେଶୀ ଅଧୀର ହୋଇପଡ଼େ । ଆଉ ପିଲାଙ୍କ ବାପ ମାଙ୍କର ଏହିପରି ନିଷ୍ଠୁରତା ଦେଖି ଭାବେ ସେମାନଙ୍କର ଜୀବନରେ ଏଥିରୁ ମୁକ୍ତି ନାହିଁ । ବାପ ଭୟରେ ମାଧିଆ ଘରୁ ବାହାରିବା ବେଳେ ମୃତ୍ୟୁ ନିକଟକୁ ଯିବା ଭଳି ବୋଧ କରେ । ନ ଗଲେ ଉପାୟ ନାହିଁ, ମା ରାଗ ହେବ, ବାପ ଗାଳି ଦେବ । ଶେଷରେ ମାଷ୍ଟର ମାରିବ । କାନ୍ଦି କାନ୍ଦି ସ୍କୁଲକୁ ଯାଏ, କିମ୍ବା ବାପ ନେଇ ଛାଡ଼ି ଦେଇ ଆସେ । ସ୍କୁଲରେ ମାଷ୍ଟରଠାରୁ ଯେଉଁ ଧମକ ପାଏ ଓ ବେଳେ ବେଳେ ଯେଉଁ ଗୋଟେ ଖଣ୍ଡେ ମାଡ଼ ଖାଏ, ସେଥିରେ ତାହାର ସାହସ ଲୋପ ପାଏ ଏବଂ ଭୟ ଦୃଢ଼ୀଭୂତ ହୁଏ ।

ସ୍କୁଲର ଅନୁଭୂତିରୁ ସେ ଦେଖିଲା ଯେ ରୋଗ ଏକା ସ୍କୁଲରୁ ମୁକ୍ତି ପାଇବାର ଏକମାତ୍ର ପନ୍ଥା । ରାମ ଜର ହେବାରୁ ପାଞ୍ଚଦିନ ସ୍କୁଲକୁ ଆସି ନ ଥିଲା, ଲୋଚନର ମୁଣ୍ଡ ବଥାଇବାରୁ ମାଷ୍ଟରେ ତାକୁ ଆଉ ପିଲାଙ୍କ ସାଥିରେ ଘରକୁ ପଠାଇ ଦେଇଥିଲେ । ଲୋକାର ପେଟ ବଥାଉଥିବାରୁ ଲୋକାବାପ ଲୋକା

ଇସ୍କୁଲକୁ ଆସି ପାରିବ ନାହିଁ ବୋଲି ମାଷ୍ଟରଙ୍କୁ କହିଦେଇ ଗଲା । କେବଳ ଦିହ-ଦୁଃଖ ହେଲେ ସ୍କୁଲରୁ ଛୁଟି ମିଳେ ଏବଂ ମାଷ୍ଟର ସେଥିପାଇଁ କୌଣସି ଶାସ୍ତି ଦିଅନ୍ତି ନାହିଁ । କିନ୍ତୁ କାହିଁ , ମାଧିଆର ସେ ମୁକ୍ତି କାହିଁ ? ତାର ଜର, ପେଟ-ବଥା ମୁଣ୍ଡବଥା ତ ହେଉ ନାହିଁ । ପେଟବଥା, ମୁଣ୍ଡବଥା, ଜର କାହାକୁ କହନ୍ତି ଓ ସେସବୁ କିପରି ହୁଏ, ତାହା ତାକୁ ଜଣାନାହିଁ । ଅନେକ ଥର ମାକୁ କହେ "ମା ମତେ ଜର ହେଉଚି, ମୁଁ ଇସ୍କୁଲକୁ ଯିବିନି," ମା ଦେହରେ ହାତମାରି କହେ "କାଇଁମ, ମିଛଟା, ଜର ଫର କିଛି ନାହିଁ, ଖାଲି ଇସ୍କୁଲକୁ ନ ଯିବାର ଆଳ ।" କେତେଥର ମୁଣ୍ଡ ବଥାଇବା, ପେଟ ବଥାଇବାର କହି ମଧ ନିସ୍ତାର ମିଳିଲା ନାହିଁ । ଶେଷରେ ଦେଖିଲା ତାପାଇଁ ସ୍କୁଲକୁ ଯିବା ଦଣ୍ଡ କପାଳଲିଖନ । କେତେଥର ଜର ହେବା ପାଇଁ ଚେଷ୍ଟାକଲା, ପୋଖରୀରେ ବହୁତ ବୁଡ଼ିଲା, ବର୍ଷାରେ ତିନ୍ତିଲା । କିନ୍ତୁ କାହିଁ ଜର ତ ହେଲା ନାହିଁ ।

ଏହିପରି ବର୍ଷେ ଦେଢ଼ବର୍ଷ କାଳ ସ୍କୁଲକୁ ଯାଇ ଯାଇ ମାଧିଆ ବର୍ଣ୍ଣ-ବୋଧ ଶେଷକରି ଶିଶୁବୋଧ ପଢ଼ିଲାଣି, ପଣିକିଆ ସାରି ଅଙ୍କ କଷିଲାଣି । ମାଧିଆର ବାପ ଶାମ ପଧାନେ ନିଜେ ରାଜମିସ୍ତ୍ରୀ କାମ କରି କୁଟୁମ୍ବ ଚଳାଚଳ କରନ୍ତି, ନିଜେ ଦସ୍ତଖତ କରିବା ଛଡ଼ା ବେଶୀ ପାଠ ପଢ଼ି ନାହାନ୍ତି, କିନ୍ତୁ ଏକମାତ୍ର ପୁଅ ରାଧାମାଧବ ଓରଫ ମାଧିଆକୁ ପାଠ ପଢ଼ାଇବାକୁ ଭାରି ଚେଷ୍ଟା କରିଆସିଚନ୍ତି । ମାସକୁ ମାସ ମାଷ୍ଟରଙ୍କୁ ଆଠଅଣା ଦରମା ଦେଇ ପିଲାଟିକୁ ଭଲ ପଢ଼ାଇବା ପାଇଁ ଅନୁରୋଧ କରିଚନ୍ତି । ମାଷ୍ଟରେ ମଧ ଦରମା ଲୋଭରେ ଓ କର୍ତ୍ତବ୍ୟ ଦୃଷ୍ଟିରେ ପିଲାଟି ପ୍ରତି ବିଶେଷ ଯତ୍ନ ନିଅନ୍ତି । ସେହି ବିଶେଷ ଯତ୍ନ ମାଧିଆ ପ୍ରତି ଅଧିକ ଦୁଃଖର କାରଣ । ଏହି ଅଧିକ ଯତ୍ନର ଅର୍ଥ ମାଧିଆ ପାଇଁ ଅଧିକ ଦୁଇ ଚାରିଟା ଚାପୁଡ଼ା ବା କାନମୋଡ଼ା ।

ଶାମପଧାନେ ନିଜ ଅଳ୍ପ ରୋଜଗାର ମଧରୁ ପୁଅର ଲୁଗା ଜାମା, ବହି ସିଲଟ ବାବତରେ ଖରଚ ପାଇଁ ଆଦୌ କୁଣ୍ଠିତ ନୁହନ୍ତି । ବହି ଚିରିବା, ସିଲଟ ଭାଙ୍ଗିବା ମାଧିଆର ଗୋଟାଏ ଅଭ୍ୟାସ ହୋଇ ପଡ଼ିଲାଣି । ସ୍କୁଲକୁ ଯିବା ପାଇଁ ମାଧିଆର ପଇସାଏ ଅଧଲାଏ ଗଜାଖିଆ ବି ଆବଶ୍ୟକ ହୁଏ । ମାଧିଆ ଗରିବ ଲୋକର ପୁଅ ହେଲେ କଣ ହେବ, ତାର ପାଠପଢ଼ା ଛଅଟା ମାଷ୍ଟରଙ୍କ ମନକୁ ପାଏ । ମାଧିଆ ଗଣେଶ ପୂଜା ଓ ସରସ୍ୱତୀ ପୂଜାରେ ଯେଉଁ ପଜାନିଏ, ତାହା ବେଶ୍ ସବିଧି ହୋଇଥାଏ ।

ସବୁ ହେଲେ କଣ ହେଲା, ମାଧିଆର ସ୍କୁଲକୁ ଯିବାଚିନ୍ତା ବେଳକୁବେଳ ବଡ଼ ପ୍ରବଳ ହୋଇପଡ଼ିଲା । ମାଷ୍ଟରଙ୍କ ଭୟ ଏବଂ ଇସ୍କୁଲ ଭୟରୁ ସେ କିପରି ଅବ୍ୟାହତି ପାଇବ, ସେ ସେଥିପାଇଁ ଦିଅଁଙ୍କୁ କେତେ ମୁଣ୍ଡିଆ ମାରଲା । କିନ୍ତୁ ଦିଅଁ ମଧ୍ୟ ଗୁହାରି ଶୁଣିଲେ ନାହିଁ ।

ଦିନେ ଗୋଟେ ସୁବିଧା ଆସିଗଲା । ମାଧିଆର ମାମୁଁ ଆସିଥିଲା । ମାଧିଆ କାନ୍ଦିଲା, "ମୁଁ ମାମୁଁ ଗାଁକୁ ଯିବି ।" ଶେଷରେ ତା' ମା କହିଲା "ଯାଉ, ଆଠଦିନ ରହି ଚାଲି ଆସିବ ।" ମାମୁଁ ଘରୁ ବାହାରିବାର ଦୁଇଘଡ଼ି ଆଗରୁ ମାଧିଆ ଯାଇ ବାଟରେ ହାଜର, ସେ କିପରି ସ୍କୁଲରୁ ଦୂରରେ ରହିବ, ସେଥିପାଇଁ ସେ ମହା ଆନନ୍ଦରେ ମାମୁଁ ଘରକୁ ଧାଇଁଚି ।

ମାମୁଁ ଘରେ ଦୁଇଚାରି ଦିନ ରହିଚି, ଖବର ପହଞ୍ଚିଲା, ମାଧିଆର ବାପ ହଇଜା ବେମାରିରେ ପଡ଼ିଚି, ପୁଅକୁ ଡକାଇ ପଠାଇଚି । ମାଧିଆର ଅନିଚ୍ଛା ସତ୍ତ୍ୱେ ତା ମାମୁଁ ତାକୁ ନେଇ ଗାଁରେ ଛାଡ଼ିଦେଲା । ବାପ ତିନିଦିନି ହଇଜାରେ ଆଖି ବୁଜିଦେଲା । ମାଧିଆ ମା'ର ସଂସାର ସରିଗଲା । ମାଧିଆ ବିଶେଷ କିଛି ନବୁଝି ମାଆ ସାଙ୍ଗେ ବହୁତ କାନ୍ଦିଲା ।

ଦିନ ଚାଲି ଯାଉଛି, ଚାଲିଗଲା । ବାପ ମରି ଯିବାର ଚାରି ଛମାସ ହୋଇ-ଗଲାଣି । ଶୁଦ୍ଧଘର ପରଠାରୁ ମାଧିଆର ଇସ୍କୁଲକୁ ଯିବା ବନ୍ଦ । ତାକୁ କହୁଚି କିଏ ? ମା ତ ପୁଅଟିକୁ ଚାହିଁ ବଞ୍ଚିଚି, ତାକୁ ଗାଳି ଧମକାଇ ଇସ୍କୁଲ ପଠାଇବା କଥା ପଚାରେ କିଏ ? ମାଷ୍ଟରଙ୍କର ତ ଦରମା ଆଶା ନାହିଁ, ସେ ବା ପିଲାଙ୍କୁ ପଠାଇ ତାକୁ ଡକାଇବେ କିଆଁ ? ସେ ନିଜେ ଆସି ନେବା ତ ଦୂରର କଥା ।

ମାଧିଆ ଦିନଯାକ ବାଡ଼ିପଟେ ଦାଣ୍ଡ ପଟେ ବୁଲେ, ମାଆ ଡାକିଲେ ଘରକୁ ଆସେ । ବହିସିଲଟକୁ ଆଖିରୁ ଦୂରରେ ପକାଇ ଦେଇଛି । ଖେଳି ବୁଲି କେତେ ସମୟ କଟାଇବ ? ନିଜ ସାହିପିଲା ଗୁଡ଼ାକ ଇସ୍କୁଲକୁ ଚାଲିଯାନ୍ତି । ଜଣେ ଜଣେ କୌଣସି ଦିନ ସ୍କୁଲକୁ ନଯାଇ ଘରେ ରହିଗଲେ ତା' ସଙ୍ଗେ ମାଧିଆ ଖେଳେ । ସ୍କୁଲ ପିଲାମାନେ କ୍ରମେ କ୍ରମେ ମାଧିଆକୁ ଦୂରରେ ରଖିବାକୁ ଚେଷ୍ଟା କଲେଣି । ମାଧିଆ ତ ଇସ୍କୁଲ ପିଲା ନୁହେଁ, ସେ ତ ପାଠ ପଢ଼ା କଥାରେ କଥାବାର୍ତ୍ତା କରିବ ନାହିଁ । ମାଧିଆ ଟିକିଏ ଦୂରରେ ରହି ସେମାନଙ୍କ କଥାବାର୍ତ୍ତା ଶୁଣେ, ସେମାନଙ୍କ ନୂଆ ମାଷ୍ଟରଙ୍କ କଥା, ରଘୁର ଇସ୍କୁଲରେ ମାଡ଼କଥା,ଇସ୍କୁଲ ଖେଳ ଡ୍ରିଲ୍ କଥା ବହୁତ ଶୁଣେ । ଶିଶୁଖେଳା ଗୀତ, ମାନସାଙ୍କ, ବହିର ଗଳ୍ପ

ବିଷୟରେ ସେମାନେ କଥାବାର୍ତ୍ତା ହେଉଥିବା ବେଳେ ଶୁଣୁଥାଏ । ତାହାର ମନ, ସେ ସବୁ ଜାଣନ୍ତା, ତାଙ୍କ ସଙ୍ଗେ କଥାବାର୍ତ୍ତା କରନ୍ତା, ତାଙ୍କ ସଙ୍ଗେ ଇସ୍କୁଲକୁ ଯାଇ ଖେଳନ୍ତା, ଡ୍ରିଲ କରନ୍ତା । ଦିନେ ଦିନେ ପାଠପଢ଼ା ପିଲଙ୍କ ପଛେ ପଛେ ସ୍କୁଲ ପର୍ଯ୍ୟନ୍ତ ଯାଏ । ସାଙ୍ଗ ସ୍କୁଲ ପିଲମାନେ ଅବାଧରେ ସ୍କୁଲ ଭିତରକୁ ହସ-ଖେଳ ଧାଁ ଧପଡ଼ କରି ଗ୍ଲଲିଯା'ନ୍ତି । ସ୍କୁଲ ଯେପରି ସେମାନଙ୍କର ନିଜ ସମ୍ପତ୍ତି । ମାଧିଆ ଯାଇପାରେ ନାହିଁ, ସ୍କୁଲରେ ତା'ର ଅଧିକାର ନାହିଁ । ସ୍କୁଲ ହତା ପର୍ଯ୍ୟନ୍ତ ତା'ର ପ୍ରବେଶ ପାଇଁ ସମ୍ଭବତଃ ମନା । ସ୍କୁଲ ସିନା ସ୍କୁଲ ପିଲଙ୍କ ପାଇଁ; ଅନ୍ୟମାନେ ସେଠାକୁ ଯିବେ କାହିଁକି ? ମାଧିଆ ଦୂରରେ ରହି ଦେଖେ, ଏପଟ ସେପଟ ଟିକିଏ ବୁଲେ । ପିଲମାନେ ହସି ଖେଳି ଧାଁ ଦୌଡ଼ କରୁଥିବାର ଦେଖେ, ପାଟିକରି ପଢ଼ୁଥିବାର ଶୁଣେ । ତା'ର ପୂର୍ବସ୍ମୃତି ଜାଗିଉଠେ । ସେ କିପରି ପାଠ କହିପାରି ଅନ୍ୟ ପିଲମାନଙ୍କ କାନ ମୋଡ଼ୁଥିଲ, ପଣ୍ଡିତ କିପରି ତା' ଉତ୍ତରରେ ଆନନ୍ଦିତ ହୋଇ ତା' ପିଠିରେ ହାତ ମାରି ସାବାଶ୍ କରିଥିଲେ, ସେ ସବୁ ତାର ମନେ ପଡ଼ିଯାଏ । ନୂଆ ବହି, ନୂଆ ସିଲଟ୍, ନୂଆ ପିନିସିଲ କିଣିବା ଦିନ ସେ କିପରି ଆନନ୍ଦ ଅନୁଭବ କରେ, ସେ ଆନନ୍ଦ ଆଉ ତା' ଜୀବନରେ ଘଟୁନାହିଁ, ଏହା ଭାବି ଭାବି କାନ୍ଦ କାନ୍ଦ ହୋଇ ଫେରିଆସେ । ଶେଷରେ ମନେ ପଡ଼ିଯାଏ ତା'ର ବାପ କଥା । ବାପା ଥିଲେ, ସେ ଇସ୍କୁଲକୁ ଯାଉଥାନ୍ତା, ବାପାଥିଲେ ସେ ଆଜି ହତଭାଗ୍ୟ ଭାବରେ ସ୍କୁଲରୁ ବଞ୍ଚିତ ହୋଇ ନ ଥାନ୍ତା ।

ଆଜି ହରିତାଳିକା । ମାଧିଆ ସକାଳୁ ଉଠି ଦାଣ୍ଡକୁ ବାହାରିବା ବେଳକୁ ସବୁ ପିଲେ ସ୍କୁଲ ପାଇଁ କଇଁ ଫୁଲ, କନିଅର ଫୁଲ ପ୍ରଭୃତି ଆଣି ଜମା କରୁଚନ୍ତି । ସମସ୍ତେ ଆଜି ବ୍ୟସ୍ତ । ମାଧିଆ ସଙ୍ଗେ ଖେଳିବାପାଇଁ, କଥାବାର୍ତ୍ତା କରିବା ପାଇଁ ମଧ ସେ କାହାକୁ ପାଉ ନାହିଁ । ସେମାନେ ଫୁଲ ନେଇ ସ୍କୁଲକୁ ଗଲେ, ଘର ଲିପିଲେ, ତୋରଣ ବାନ୍ଧିଲେ । ମାଧିଆ ସେ ସବୁ ଦେଖି ଆସିଲ, ତାର ସେଥିରେ ଭାଗ ନାହିଁ, ସେ ପାଖ ମାଡ଼ିବା ଅଧିକାର ମଧ ନାହିଁ । ଭିତରକୁ ଯାଇ ଦେଖିବାକୁ ଇଚ୍ଛା; ପିଲେ କାଳେ ତଡ଼ିବେ, ମାଷ୍ଟରେ କାଳେ ମାରିବେ, ସେଥିପାଇଁ ଗଲ ନାହିଁ ।

ସ୍କୁଲଆଡ଼ୁ ଫେରି ଆସି ମାଧିଆ ମନଟି ମାରିଦେଇ ଦୁଆରେ ବସିଚି; ଦେହରେ ସ୍ଫୁର୍ତ୍ତି ନାହିଁ, ଖାଲି ଏଆଡ଼େ ସେଆଡ଼େ ଗ୍ଲହୁଁଚି, ମନେ ମନେ କଣ ଭାବୁଚି । ସେ ମାମୁଁଘରକୁ ଯିବା ଦିନୁଁ ତା'ର ବହି ସିଲଟ ପ୍ରଭୃତି କେଉଁଠି ପଡ଼ିଥିଲ, ତା'ର ଖବର ନେଇ ନ ଥିଲ । ଆଜି ଧୀରେ ଯାଇ ସେ ଗୁଡ଼ିକ ଖୋଜି

ଖୋଜି ଆଣି ଦୁଆରେ ବସିଚି । ସେଗୁଡ଼ିକ ଦେଖି ତାର ଗତ ସମୟର ପାଠ-ପଢ଼ା କଥା ମନେ ପଡ଼ିଯାଉଚି । ଯେଉଁ ପାଠ ପଢ଼ା ତାର ଯମଦଣ୍ଡ ଥିଲା, ଆଜି ତାକୁ ତାହା ବଡ଼ ମଧୁର ବୋଧ ହେଉଚି; ସେ ପାଠ ପଢ଼ିବା ପାଇଁ ଭାରି ବ୍ୟାକୁଳ । ଇଚ୍ଛା କରୁଚି, ମାଷ୍ଟରେ ଆଜି ପାଠ ପଢ଼ିବା ପାଇଁ ଡାକନ୍ତେ କି ? ପିଲାମାନେ ତାକୁ ଇସ୍କୁଲକୁ ଧରିନେଇ ଯାନ୍ତେ କି ସେ ପଢ଼ିବାକୁ ଯାଆନ୍ତା ଆଉ ପଢ଼ିଯିବାକୁ ଲୁଚନ୍ତା ନାହିଁ ।

ପିଲାମାନେ ଯୋଡ଼ି ଯୋଡ଼ି ପୁଞ୍ଜି ପୁଞ୍ଜି ହୋଇ ଇସ୍କୁଲରୁ ଘରକୁ, ଘରୁ ଇସ୍କୁଲକୁ ଯିବା ଆସିବା କରୁଚନ୍ତି, ସେମାନଙ୍କର ଆନନ୍ଦର ସୀମା ନାହିଁ । ମାଧିଆ ପ୍ରତି ସେମାନେ ଦୃଷ୍ଟିପାତ କରିବାକୁ ମଧ୍ୟ ଅବସର ପାଉ ନାହାନ୍ତି । ମାଧିଆ ବସି ବସି କଅଣ ଭାବୁଚି । ବହି ଧରି ଟିକିଏ ଟିକିଏ ପଢ଼ୁଚି । ସିଲଟରେ କଣ ଲେଖୁଚି । କିନ୍ତୁ ପଢ଼ିଥିବା ପାଠର ଆଠପଣ ଭୁଲି ସାରିଚି । ମନ, କେହି ବତାଇ ଦିଅନ୍ତା ସେ ପଢ଼ନ୍ତା ।

ଉପରଓଳି ହୋଇଗଲା । ପିଲାମାନେ ପୂଜା ଧରି ଇସ୍କୁଲକୁ ଗଲେ, ଭାଙ୍ଗିବା ପାଇଁ ନଡ଼ିଆଟିଏ ଲେଖାଏଁ ନେଇଚନ୍ତି । ସେ ଦେଖିଲା । ତାର ପ୍ରାଣ ଅଧୀର ହୋଇ ଉଠିଲା; ମନ ଉଛନ୍ନ ହୋଇ ପଡ଼ିଲା, ଘର ଭିତରକୁ ଧାଇଁଗଲା । ମାକୁ ଦେଖି କଇଁ କଇଁ କାନ୍ଦି ପକାଇଲା । ମାଆ କଣ ହୋଇଛି ପଚାରୁ ପଚାରୁ ତାର କାନ୍ଦର ବେଗ ଶତ ଗୁଣିତ ହୋଇଗଲା, ସେ କଥା କହିପାରିଲା ନାହିଁ । ବହୁ କଷ୍ଟରେ କହିଲା, "ମା, ମୁଁ ଇସ୍କୁଲକୁ ପଢ଼ି ଯିବି, ମୁଁ ପୂଜା ନେବି, ନଡ଼ିଆ ଭାଙ୍ଗିବି ।" ମା'ର ଅର୍ଦ୍ଧବିସ୍ମୃତ ସମସ୍ତ ଅତୀତ ଦୁଃଖ ମାଡ଼ି ଆସିଲା । ପୁଅ ସଙ୍ଗେ ନ କାନ୍ଦି ରହି ପାରିଲା ନାହିଁ । ବହୁତ କାନ୍ଦିବା ପରେ, ପୁଅର ଆଖି ପୋଛି-ଦେଇ କହିଲା "ନାଇଁରେ ବାପ, ଆଉ ମାଷ୍ଟରକୁ କି ପଇସା ଦେବ ଯେ ତୁ ପାଠ ପଢ଼ିବୁ, ତୁ ନ ପଢ଼ ପଛେ, ବଞ୍ଚିଥା ।"



# ଆଶା-ମରୀଚିକା

(ନବଭାରତ, କନ୍ୟା ୧୩୪୧)

ମଧୁଆର ବାପା ମଲାଦିନ ଦୁଃଖ ଓ ଭୟ ତା' ହୃଦୟକୁ ମାଡ଼ି ବସିଲା । ବିବିଧ ଗୁରୁଚିନ୍ତାରେ ସେ ଏକାନ୍ତ ହୋଇ ପଡ଼ିଲା । ଛୋଟଭାଇ ଏବଂ ବିଧବା ମା, ଏମାନଙ୍କ ଚିନ୍ତା, ତା ଛଡ଼ା ଜାତିଭାଇଙ୍କ ଜାତିଆଣ ଜଞ୍ଜାଳ, ରଜାଘର ବେଠି ଦାଉ, ସରବରାକାରର ଖଜଣା ଭୟ, ସାଉ ସବରଙ୍କ କଥା ପ୍ରଭୃତି ହରେକ ରକମର ଚିନ୍ତା ମଧୁ ମୁଣ୍ଡରେ ଯେପରି ବୁଲିଗଲା । ଏ ସବୁ ଜଞ୍ଜାଳ ଭିତରେ ସେ ପାରି ଉଠି ମଧୁ ବେହେରା ବୋଲି ଗୋଟିଏ ମଣିଷ ହୋଇ ପାରିବ ନାହିଁ ଭାବି ସେ ବହୁତ କାନ୍ଦି ପକେଇଲା ।

ଋଣ କରଜ ଆଣି ବାପ ସୁଧଘର କରି ପକାଇଲା । ଦିନ ପରେ ଦିନ ଚାଲି ଯାଉଥାଏ, ମାସେ ଦି ମାସ ଉତାରେ କ୍ରମେ କ୍ରମେ ତାର ଚିନ୍ତାଗୁଡ଼ାକ ମାଡ଼ି ଆସିଲା ଏବଂ ଜଞ୍ଜାଳଗୁଡ଼ାକର ଗୁରୁତ୍ୱ ଓ ବିଭିନ୍ନ ଅଭ୍ୟାସକ୍ରମେ କ୍ଷୀଣ ହୋଇ ଆସିଲା ।

ପିଲାଟା ସବୁଦିନେ ଟିକେ ହେଙ୍ଗେଡ଼ିଆ । ବାପଟା ବଡ଼ ରାହୁଆ, ଭାରି ଢଟକଣାରେ ରଖିଥିବାରୁ ମଧୁର ଘରେ ଗୋଟାଏ ହେବାର ଆଶାଟା ସଫଳ ହୋଇ ପାରି ନ ଥିଲା । ବାପା, ଗାଈଗୋରୁ ବିଲବାଡ଼ି ଭିତରେ ଲଗାଇ ତାର ସବୁତକ ସମୟ ନେଇ ଯାଉଥିଲା । ଗାଁର ଆଉ ଟୋକା ଗୁଡ଼ାକ ନାଟ ତାମସା, ଦଣ୍ଡପାଟ, ମେଳା କୀର୍ତ୍ତନ ଆଉ ଆଉ ଗାଁକୁ ଦେଖି ଯିବେ ; କିନ୍ତୁ ମଧୁଆକୁ ବାପା ଛାଡ଼ିବ ନାହିଁ । ମନରେ ଗୁଡ଼ାଏ ରାଗ ହୁଏ, କାନ୍ଦେ । ବାପା ନ ଥିଲେ

ତାର ଜୀବନ କିପରି ସୁଖମୟ ହୋଇଥାନ୍ତା, ସେ କଳ୍ପନା କରେ । ସୁବିଧା ପାଇଲେ, ବାପାକୁ ଏଡ଼ି ଏବଂ ତାକୁ ଲୁଚି ଦୌଡ଼ି ଦୌଡ଼ି ଅନ୍ୟ ଟୋକାଙ୍କ ସାଙ୍ଗ ଧରି, ବାଟଗାଁ ରମଲୀଳା, କଞ୍ଚନପଲ୍ଲୀ କୃଷ୍ଣଲୀଳା, ଆଉ କଟକ ଆଡ଼ୁ ଆସିଥିବା ସୁଆଙ୍ଗ ଦେଖିବାକୁ ଚାଲିଯାଏ । ଏଥିପାଇଁ ବାପଠାରୁ ସେ ଯେଉଁ ଶାରୀରିକ ଏବଂ ମାନସିକ ଶାସ୍ତି ପାଏ, ସେଥିରେ ଆଉ ଯେ କୌଣସି ପିଲାର ମତି ଗତି ବଦଳି ଯିବାର କଥା ; କିନ୍ତୁ ମଧୁର କିଛି ପରିବର୍ତ୍ତନ ହୁଏନାହିଁ ।

ମଧୁର ମା ସବୁଦିନେ ମଧୁକୁ ତା ବାପର କ୍ରୋଧରୁ ଆଢୁଆଳ କରି ରଖିଥାଏ ଓ ମଧୁର ବିପଦ-ଆପଦରେ ଦି'ଚାରି କଥାରେ ବାପକୁ ଭୁଲାଇ ଦେଇ ତା' ରାଗ ଶାନ୍ତ କରେ । ନିତାନ୍ତ ନ ପାରିଲେ ଜବରଦସ୍ତି କରି କହେ, "କଲେ କଲା ! ପିଲେ କଣ କରନ୍ତି ନି କି ? ତେମେ ଆଉଦିନେ ମୋ ପିଲାଠେଇ ହାତ ଛୁଆଇଁବ ନାହିଁଟି ।" ବାସ୍ତବରେ ଏ କଥାବ୍ୟୂହ ଭେଦ କରି ମଧୁ ବାପାର କ୍ରୋଧ ଏବଂ ଶାସ୍ତି ପ୍ରୟାସ ମଧୁର ପାଖ ପହଞ୍ଚିପାରେ ନାହିଁ । ମଧୁଆ ମା ପିଲାଙ୍କୁ ଶାସନ କରିବାରେ ବଡ଼ କଡ଼ା, ଲୋକଙ୍କ ଆଖି ବୁଜି ହୋଇପଡ଼େ । କିନ୍ତୁ ତା' ପିଲାଙ୍କ ଦେହରେ ଆଉ କାହାରି ହାତ ବାଜିବ ନାହିଁ ।

ପିଲାଦିନୁଁ ମଧୁଆର ନାଟ ତାମସାରେ ଭାରି ରସିକତା । ସେ ଯେତେ ନାଟ ତାମସା ଦେଖିବାକୁ ଯାଇଛି, କୌଣସିଠାରେ ସେ ମଝିରେ ଢୁଳାଇ ପଡ଼ିବାର କେହି ଦେଖି ନାହିଁ । ସବୁ ତାମସାରେ ବିଶିଷ୍ଟ ବିଶିଷ୍ଟ ନାଟୁଆଙ୍କର ରଙ୍ଗଭଙ୍ଗି ସେ ଅବିକଳ ଲକ୍ଷ୍ୟ ରଖିପାରେ ଏବଂ ଦୁହା ଗୀତ ପ୍ରଭୃତି ସ୍ପଷ୍ଟ ମନେ ରଖି ନିର୍ଜନ ସ୍ଥାନରେ ସେ ଗୀତସହ ନାଟ ଅଭିନୟ କରେ । ଏପରି କରିବା ବେଳେ ସେ ସଂସାରକୁ କିପରି ଭୁଲିଯାଏ, ଦୂରରୁ ଲକ୍ଷ୍ୟ କରୁଥିବା ଲୋକ ବେଶ୍ ଅନୁଭବ କରିପାରିବ ।

ବାପାର ମୃତ୍ୟୁ ପରେ ମଧୁଆ ତା ଯାତ୍ରା-ପ୍ରିୟତାକୁ ଯଥେଷ୍ଟ ବଢ଼େଇ ଦେଲାଣି । ଗାଁଠାରୁ ଦେଢ଼ ମାଇଲ ଦୂରରେ ମହନପୁରରେ ନୂଆ ତାମସା-ଆଖଡ଼ା ହୋଇଛି । କଂସବଧ, ଧ୍ରୁବ ସୁଆଙ୍ଗ, ମୋହନ ମୁରଲୀ ପ୍ରଭୃତି ସୁଆଙ୍ଗ ସଙ୍ଗେ ବହୁତ ନୂଆ ଧରଣର ଫାର୍ଶର ମଧ୍ୟ ସେଠାରେ ଆଖଡ଼ା ହୁଏ । ମଧୁଆ ସବୁଦିନେ ସନ୍ଧ୍ୟାବେଳୁଁ ସେଠାରେ ହାଜର । ପ୍ରଥମେ ପ୍ରଥମେ ଆଖଡ଼ା ସରି-ଗଲେ ଘରକୁ ଫେରି ଆସୁଥିଲା । କ୍ରମେ କ୍ରମେ ଦୁଆର ମୁହଁରେ ବସିବାଠାରୁ ଆଖଡ଼ା ଘରେ ପ୍ରବେଶ କରିବାର ଅନୁମତି ପାଇବାରୁ, ଏବେ ତାହାର ଅଧିକାଂଶ ଦିନ ରାତିରେ ଘରେ ରହିବା ବନ୍ଦ । ମା ବୁଝାଏ, ଗାଳିଦିଏ, କହେ,

"ଘରେ ରହ, ଘର କଥା କର, ତେବେ ସଂସାରରେ ଘର କରିବୁ ।" ମଧୁର ଉଚ୍ଚ ଆଶା ତୁଳନାରେ ଯେ ଏ କଥାଗୁଡ଼ାକର ମୂଲ୍ୟ କିଛି ନୁହେଁ, ପୁଅ ତାର ନାଟୁଆ ହୋଇ ଗଣ୍ୟମାନ୍ୟ ହେବାକୁ ଯାଉଛି, ଏକଥା ମା ବିଚାରୀ ବୁଝିବ କୁଆଡ଼ୁ ? ସାନପୁଅ ସାଧୁଆ ସାହାଯ୍ୟରେ ମା କୌଣସି ମତେ ଚଳି ଯାଉଥାଏ ।

ମଧୁଆର ଏଣେ ଆଖଡ଼ାରେ ଖୁବ୍ ଉନ୍ନତି ହୋଇଗଲାଣି । ସେ ଆଖଡ଼ାରେ ପାଳି ଧରିବା, ଗିନି ବଜାଇବା କାର୍ଯ୍ୟରେ ମଧ୍ୟ ସାମାନ୍ୟ ଦକ୍ଷତା ଲାଭ କଲାଣି । ତାମସା ଦଳରେ ତାର ଭବିଷ୍ୟତ ଉନ୍ନତି କେତେଦୂର ପର୍ଯ୍ୟନ୍ତ ଯିବ, ସେ କଳ୍ପନାରେ ସେ ସୁଖ ଅନୁଭବ କରୁଥାଏ ।

ଏ କେତେଦିନ ହେଲା ମଧୁଆ ଜୀବନରେ ଆଉ ଗୋଟାଏ ନୂଆ ଭାବ ଅନୁଭବ କରୁଛି । ଆଖଡ଼ା ଘରଟା ଗାଁ ମଝିରେ, ଆଉ ଗାଁର ଧନୀ ଗଉଡ଼ ନିଧି ବେହେରା ଘରଟା ମଧ୍ୟ ଦକ୍ଷିଣ ସାଇର ଠିକ୍ ମଝିରେ, ଅର୍ଥାତ୍ ଆଖଡ଼ା ଘର ପାଖରେ । ନିଧି ବେହେରା ଝିଅ ସାଧବ ଆଜ୍ଞା ପିଲଟିଏ ହୋଇଗଲାଣି । ଦାଣ୍ଡ କୂଅରୁ ପାଣି ନେବାବେଳେ ଆଜିକାଲି ଲୁଗା ଖଣ୍ଡିକ ଯତ୍ନରେ ପିନ୍ଧି ମୁଣ୍ଡରେ ବାଳ ଲୁଟିବା ଭଳି ଓଢ଼ଣାଟିଏ ଦେଇ ଯିବା ଆସିବା କରେ । ମଧୁଆ ସେ ଗାଁରେ କେତେଭଳି ମଣିଷଙ୍କୁ ଦେଖେ । ସାଧବ ଭଳିଆ ଆଉ ଜଣ କୋଡ଼ିଏ ସେହିପରି ଯିବା ଆସିବା କରୁଥିବାର ସେ ଦେଖେ, କିନ୍ତୁ କାହିଁକି ତା ଆଖି ଏବଂ ମନଟା ସାଧବ ଆଡ଼େ ଧାଇଁଥାଏ । ତା ଆଖିରେ ସାଧବ ଗୁଲିଟି ସୁନ୍ଦର, ତା' ହସଟି ଚମତ୍କାର । ସମସ୍ତଙ୍କ ସ୍ୱରଠାରୁ ତା' ସ୍ୱରଟି ତାକୁ ପ୍ରୀତିକର ଶୁଭେ ଏବଂ ସମସ୍ତଙ୍କଠାରୁ ସେ ସ୍ୱରଟି ଅଲଗା ହୋଇ ଆସି ତା' କାନରେ ବାଜିଯାଏ । ସେ ଆଜି ତୁଚ୍ଛାଟାରେ ଆଖଡ଼ା ସମୟ ଛଡ଼ା ଦିନରେ ଦୁଇ ଚାରିଥର ମହନ-ପୁରକୁ ଚାଲିଆସୁଛି—ସାଧବର ପାଣି ଅଣାବେଳକୁ ନିଶ୍ଚୟ ସେ ଆଖଡ଼ାଘର ଦୁଆରେ ବସିଥିବ, ନଇଲେ ଠିଆ ହୋଇଥିବ । ବେଳେ ବେଳେ ଏଣିକି ସେ ଅକାରଣେ ସକାରଣେ ନିଧି ବେହେରା ଘରକୁ ଚାଲିଯାଏ—କେତେବେଳେ ପାଣି ମନ୍ଦେ ପିଇବାକୁ ; କେତେବେଳେ ଅବା ପାନ ପାଇଁ ଚୂନ ଟିକିଏ ଆଣିବାକୁ । ସେ ମନେ ମନେ ମଧ୍ୟ ଅନୁଭବ କରିବାକୁ ଲାଗିଲାଣି ଯେ, ସାଧବ ତାକୁ ଦେଖିବାକୁ ତା ଆଡ଼କୁ ଚାହେଁ, ଦେଖିସାରି ମନରେ ଖୁସି ହୋଇ ହସେ । ମଧୁ ଯେତେବେଳେ ପାଣି ପିଇବାକୁ ନିଧି ବେହେରା ଘରକୁ ଯାଏ, ଅଧିକାଂଶ

ସମୟରେ ସାଧବ ପାଣିଡାଳ ଆଣି ଥୋଇଦିଏ । ଅର୍ଥାତ୍ ମଧୁଆକୁ ସେ ଭରି ସୁଖ ପାଏ ।

ଦିନେ ଦିନେ ମଧୁଆ ଆସି ଆଖଡ଼ା ଘରେ ପହଞ୍ଚିବା ବେଳକୁ ସାଧବକୁ ତାଙ୍କ ଦୁଆର ମୁହଁରେ ଦେଖେ । ଭବେ, ସମ୍ଭବତଃ ଦୁଇ ଘଡ଼ି ହେଲ ସେ ସେଠାରେ ଠିଆ ହୋଇ ମଧୁଆକୁ ଚାହିଁ ରହିଥିଲ । ସେ ଦିନ ମଧୁଆ ମୁଣ୍ଡରେ ଗୋଟାଏ କାଠ ପଡ଼ି ମୁଣ୍ଡଟା କଣା ହୋଇଗଲ ରକ୍ତ ବୋହିଲ । ପୋଡ଼ାକନା ଦରକାର ହେବାରୁ ନିଧି ବେହେରା ଚିରା କନା ଟିକିଏ ପୋଡ଼ି ଆଣିବାକୁ ଡାକ ପକାଇବାରୁ ସାଧବ ଆଣି ଥୋଇ ଦେଇଥିଲ । ଅର୍ଥାତ୍ ମଧୁଆ ପାଇଁ ସାଧବ ବଡ଼ ବ୍ୟାକୁଳ, ପୋଡ଼ା କନା ଆଣି ଦେବାକୁ ସେ ଚାହିଁ ବସିଥିଲ । ମଧୁଆ ଏଥିର କୃତଜ୍ଞତା କିପରି ଜଣାଇବ ଭାବି ଭାବି ଠିକ୍ କରି ପାରିଲ ନାହିଁ । ସାଧବ ଆଡ଼କୁ ଥରେ ଚାହିଁ ତା ଆଖି ପ୍ରୀତି ଏବଂ କୃତଜ୍ଞତାରେ ଛଳଛଳ ହୋଇଗଲ ।

ମଧୁଆ ଜାଣିବାରେ ତା' ଗୀତ ଶୁଣିବାକୁ ସାଧବ ନିଶ୍ଚୟ ବଡ଼ ସୁଖ ପାଉଥିବ, ପାଉଥିବ କାହିଁକି, ନିଶ୍ଚୟ ସୁଖପାଏ । ଆଖଡ଼ା ଘରେ ଗୀତ ଗାଇବାବେଳେ, ସାଧବ ଦୁଆରେ ଠିଆ ହୋଇ ଶୁଣୁଥିବ ଭାବି, ସେ ସ୍ପଷ୍ଟ ଏବଂ ଉଚ୍ଚସ୍ୱରରେ ତା' ଗାଉଣାଟା ଗାଏ । ଠିକ୍ ଗାଇ ସାରିବା ପରେ ଗୀତ ଶୁଣି ସାଧବ କିପରି ଆନନ୍ଦ ଅନୁଭବ କରୁଛି, ଏହା ଦେଖିବା କଳ୍ପନାରେ କୌଣସି ବାହାନାରେ ବାହାରକୁ ଆସି ସାଧବଘର ଦୁଆର ଆଡ଼କୁ ଚାହେଁ । କିନ୍ତୁ ସାଧବକୁ ଦେଖେ ନାହିଁ । ମନେ ମନେ ବିଚାରେ, ଦୁଆର ଆରପଟେ ରହି ଶୁଣୁଥିବ । ଏପରି ଅନେକ ଥର କରିବା ମଧ୍ୟରେ ଦୈବାତ୍ ସାଧବକୁ ଦୁଆରେ ଅନ୍ୟ କାମ କରୁଥିବାର ବା ଅନ୍ୟ କାହା ସଙ୍ଗେ କଥାବାର୍ତ୍ତା ହେଉଥିବାର ଦେଖିଲେ ତାହାର କଳ୍ପନା ଫଳବତୀ ହୋଇଛି ବୋଲି ପରମ ଆହ୍ଲାଦ ଲଭ କରେ ।

ମଧୁଆ ସାଧବ ଆଗରେ ନିଜର ଟେକ ରଖିବା ପାଇଁ ବିବିଧ ବିଷୟରେ ସାବଧାନ ହେଲଣି । ବସିବା, କାଶିବା, ଚାଲିବା, ବୁଲିବାରେ ତା'ର ଟିକିଏ ସଂଯମ ଆସିଗଲଣି । ତା'ର କଥାବାର୍ତ୍ତାରେ ବିଶେଷତଃ ସାଧବର ଉପସ୍ଥିତିରେ ବିବେକୀ ଟୁନ୍ତୁଣା ଲୋକଙ୍କର କଥାର ରଙ୍ଗ ଲଗିଯାଏ । ସାଧବ ବାପ ପ୍ରଭୃତି ଗାଁର ବଡ଼ ବଡ଼ ମଣିଷମାନେ ବଡ଼ ବଡ଼ କଥା ଚର୍ଚ୍ଚା କଲବେଳେ ମଧୁଆ ପଶି ପଶି

କଥା ପଦେ ପଦେ କହି ପକାଏ, ଅର୍ଥାତ୍ ସେ ନଗଣ୍ୟ ନୁହେଁ । ରଣପୁଙ୍ଖ କରିପକା ଫୁଲଧଡ଼ି ଲୁଗା ହଳେ ଦୁଇହଳ କିଣି ପକାଇଲଣି, ତାକୁ ସବୁଦିନ ପିନ୍ଧି ଆସେ, ପଞ୍ଚୁ ଦୋକାନରୁ କିଣି ଆଣିଥିବା କଳା କୁର୍ତ୍ତା (ଗେଞ୍ଜି) ଖଣ୍ଡ ସବୁବେଳେ ତା' ଦେହରେ ଥାଏ । ମଧୁ ଆଗରୁ ନାଟ ଆଖଡ଼ାର ମାମୁଲି ବାବୁଲି ବାଳ ରଖିଥିଲା, ଏବେ ତାକୁ ଆହୁରି ଯତ୍ନକରି ବଢ଼ାଇ ଅତି ଯତ୍ନ ସହିତ କୁଣ୍ଡାଇ ଆଖଡା ଗାଁକୁ ବାହାରେ । କାନରେ ନୋଳି ଥିଲା, ଏବେ ପାଞ୍ଚ ଟଙ୍କାରେ ବିସରି ଅଣ୍ଟାସୂତା ତିଆରି ହୋଇ ସାରିଲଣି । ଆଜିକାଲି ବଟୁଆରେ ମସଲମସଲି ବିଟା ସବୁବେଳେ ପଡ଼ିଥାଏ ।

ପୁଣ୍ୟପର୍ବ ଦିନ ସାଧବ ହଳଦୀ ମଡ଼ିଆ ଶାଢ଼ୀ ଖଣ୍ଡେ ପିନ୍ଧି ଦାଣ୍ଡଆଡ଼େ ଦେଖାଗଲେ ମଧୁ ବିଶ୍ୱରେ, ତା'ରି ମନ ନେବାକୁ ସେ ଇମିତି ବାହାରିଛି । ଦିନେ ଦିନେ ସାଧବ ହଳଦୀ ଲଗାଇ, ଗାଧୋଇ, ମୁଣ୍ଡରେ ଗୋଟିଏ ଚିତା ମାରିଥିବାର ଦେଖିଲେ, ସେ ମନେ ମନେ କହେ, "ଆଜିଯାଏ ତ ଏପରି ବେଶ ଯାର ଦେଖା ନ ଥିଲା, ତାକୁ ଖୁସି କରିବା ପାଇଁ ଏପରି ଯତ୍ନରେ ବେଶ ହେଉଚି ସିନା ।" ମଧୁଆର ପୁରାପୁରି ବିଶ୍ୱାସ ହୋଇଗଲା ଯେ, ସଂସାରରେ ତା'ର ଦୁଃଖ ସୁଖରେ ସହାନୁଭୂତି ଦେବା ପାଇଁ ଜଣେ ଅଛି—ସେ ସାଧବ, ଆଉ ସାଧବ ପାଇଁ ସେ ନିଜେ କରି ନ ପାରେ ଏପରି କିଛି ନାହିଁ ।

ମଧୁଆ ମା ବଡ଼ ହଇରଣରେ ଚଳେ, ପାରିଲା ପୁଅ ଘରକଥା ବୁଝିଲା ନାହିଁ, ସାଧୁଆ ତ ପିଲା, ସବୁକଥା ମାଇପିଟା ବୁଝେ । ଜମିଭଗ, ବେଠି-ବେଗାରି, ଗାଈଗୋରୁ, ଗାଁର ଆଉ ଆଉ କଥାମାନ ବୁଝିବା—ସବୁକଥା ସେ ନିଜେ ନ କଲେ ନ ଚଳେ । ଭଗଧାନ ପୁଞ୍ଜାକରେ ବର୍ଷକ ଯ ଭାତ ଚଳିଯାଏ । ଗାଈ ଦି' ଗ୍ରିଟାରୁ ଦୁଧ ମନ୍ଦାଏ ହେଲେ ଦହି ଘିଅ ତିଆରି ଏ କରି ବିକି ଆଉ ଆଉ ଖର୍ଚ୍ଚ ଚଳାଏ; ପୁଅ ଉପରେ ବେଳେ ବେଳେ ବିରକ୍ତ ହୁଏ, କିନ୍ତୁ ଆଉ କେହି କହିଲେ କହେ, "ହଁ, ବୋହୁଟିଏ ଘରକୁ ଆଣିଲେ କରିବନି ଯିବ କୁଆଡ଼େ ? ଏଇଲେ ନ କରୁ ।"

ପୁଅର ଅକାରଣ ଖର୍ଚ୍ଚର ମାତ୍ରା ବେଳକୁ ବେଳ ବଢ଼ିଯାଉଛି । ଲୁଗା-ପଟା, ପାନଗୁଆ, ଭେଜା ଗୁନ୍ଦା, ଯାତ୍ରାଖର୍ଚ୍ଚ ଏହିପରି ଗୁଡ଼ିଏ ନୂଆ ନୂଆ ଖର୍ଚ୍ଚ ପୁଅ ଏବେ କାଢ଼ିଲଣି । ତା'ଛଡ଼ା ମଧୁ ଟିକିଏ ଘୁଙ୍କୁମ ହୋଇ ବଢ଼ି-ଥିବାରୁ ମାଆକୁ ସେଥିପାଇଁ ସବୁ ବିଷୟରେ ଟିକିଏ ସାବଧାନ ହେବାକୁ ହୁଏ । ମଧୁଆ କିନ୍ତୁ ଘରଆଡ଼େ ମାଆ କିମ୍ବା ଭଇ ପ୍ରତି ଦୃଷ୍ଟି ଦେବାକୁ ଅବସର

ପାଏନାହିଁ । ମାଆ କୌଣସି କଥାଟାଏ ଜିଦ୍‌ଧରି କରିବାକୁ କହିଲେ ତା'ର କେତେ ଆଡେ କେତେ କାମ ଅଛି ବୋଲି କହି ଗ୍ଲିଯାଏ । ସେଦିନ ସାଧୁଆ ଭରି ଜରରେ ପଡ଼ିଗଲା । ସାଧୁଆର ଜର ବଳାଇଲେ ମଧୁଆକୁ ମା ଅଟକାଇ ଦେବ, ଏ ଆଶଙ୍କାରେ ମଧୁ ଦୁଇ ଦିନ ଘରକୁ ଆସିନାହିଁ—ଜଳଖିଆ କରି ଆଖଡ଼ାରେ ରହିଗଲା ।

ଆଗାମୀ ରଜଯାତ୍ରାକୁ ଗାଁରେ ଯାତ୍ରା ଓ ତାମସା ହେବାର ଭରି ଯୋଗାଡ଼ ଗ୍ଲିଛି । ସବୁ ନାଟୁଆଯାକ ଖୁବ୍ ଚେଷ୍ଟାରେ ଅଛନ୍ତି । ମଧୁଆ ଟିକିଏ ଅସାଧାରଣ ନାଟ୍ୟଛଟା ଦେଖାଇ ସାଧବ ଆଖିରେ ମର୍ଯ୍ୟାଦା ବଢ଼ାଇବାରେ ଲଗି ପଡ଼ିଲା । ଅନ୍ୟାନ୍ୟଙ୍କ ଅନିଚ୍ଛାସତ୍ତ୍ୱେ ନିଜପାଇଁ ଗୋଟାଏ ବଡ଼ ନାଟୁଆର ସ୍ଥାନ ଯୋଗାଡ଼ କରିନେଲା, ସେଥିପାଇଁ ତାକୁ କିଛି ଅଧିକା ଗ୍ନଦା ଦେବାକୁ ପଡ଼ିଲା ଅବଶ୍ୟ । ସେ ନାଟରେ ମନ୍ତ୍ରୀ ହେଲା । ତାଠାରୁ ଭଲ ନାଟୁଆ ଥିଲେ ସୁଦ୍ଧା ତାର ଦାବୀଟାକୁ ଉପେକ୍ଷା କରଯାଇ ପାରିଲା ନାହିଁ ।

ମଧୁଆର ଆନନ୍ଦର ସୀମା ନାହିଁ, ସେ ମନ୍ତ୍ରୀ ହୋଇ ନାଚିବ, ସାଧବ ଦେଖିବ । କାଳେ ସାଧବ ଥରେ ମାତ୍ର ନାଟ ଦେଖି ସନ୍ତୁଷ୍ଟ ହୋଇ ନ ପାରେ, ଏ ଆଶଙ୍କାରେ ସେ ବଡ଼ ଅସ୍ଥିର ହୋଇ ପଡ଼ିଲା । ଭବି ଭବି ଠିକ୍ କଲା, ଆଖଡ଼ା ମାଲିକ ରଘୁ ବିଶ୍ୱାଳକୁ କହି, ଆଉ ଥରେ ନାଟ କରିବାକୁ ହେବ । ତାକୁ ଦିନ ରତି ଅବସର ନାହିଁ । ନିଜ ଅଭିନୟଟା ଭଲ କରିବାରେ ଲଗିଛି । ରତିରେ ଶୋଇଲା ବେଳେ ବି ସେହି ସ୍ୱପ୍ନ, ରଜ ସଂକ୍ରାନ୍ତି କେତେ ଦିନ ରହିଲା ପ୍ରତ୍ୟହ ଦୁଇ ତିନି ଥର ଗଣୁଚି ।

ଏଣେ ସାଧବକୁ ଭରି ଜର । ୫ ଦିନ ହୋଇଗଲଣି । ବୈଦମାନଙ୍କ ଔଷଧରେ ଆଜିଯାଏ କିଛି ଫଳ ହେଲନାହିଁ । ରଜ ନିକଟ ହୋଇ ଆସିଲଣି । ସାଧବ ଦେହ ଭଲ ନ ହେଲେ କଣ ନାଟ ଦେଖି ପାରିବ ନାହିଁ । ମଧୁର ଭରି ଗୋଟାଏ ଚିନ୍ତା ପଡ଼ିଲା । କଣ କଲେ ଜର ଭଲ ହେବ, ଦୁଇଦିନ ହେଲା ଭବୁଚି । ସେ ଶୁଣିଛି, ଗଡ଼ ଡାକ୍ତରଖାନାରୁ ଔଷଧ ଦେଲେ ଜର ଭଲ ହୋଇ-ଯାଏ । ସେଇୟା କରିବାକୁ ହେବ । କିନ୍ତୁ ଡାକ୍ତରଙ୍କୁ କିଛି ପାନଖିଆ ନ ଦେଲେ ନ ହୁଏ । ମଧୁଆ ନିଜ ଗାଁରୁ ବାହାରିଲା, ହାତରେ ପଇସା ନାହିଁ । ମା'ର ବଡ଼ ବାକ୍‌ସରେ ସେ ଦହି ବିକିବାକୁ ବାହାରି ଯିବା ଅବସରରେ ବାକ୍‌ସଟାର ଗ୍ନବି ଭଙ୍ଗି ବାକ୍‌ସର ସମ୍ବଳ ପାଞ୍ଚଗ୍ଣ୍ଡା ପଇସାରୁ ଟଙ୍କାଟିଏ ଅଣ୍ଟାରେ ମାରି ଗଡ଼କୁ ବାହାରିଲା ଔଷଧ ପାଇଁ ।

ଗଡ଼ ଦୁଇକୋଶ ବାଟ । ଘରୁ ବାହାରି ପଡ଼ିଛିତ ମେଘଟା ଘୋଟି ଆସିଲା । ତା ସଙ୍ଗେ ସଙ୍ଗେ ପବନ । ଭରି ବର୍ଷା ଭରି ତୋଫାନ । ମଧୁଆର ଛତାଖଣ୍ଡ ଓଲଟି ଭାଙ୍ଗିଗଲା । ତଥାପି ମଧୁଆ ବିଶ୍ରାମ କରିପାରୁ ନାହିଁ । ଶୀଘ୍ର ଯାଇ ଡ଼ାକ୍ତରଠାରୁ ଔଷଧ ଆଣି ଫେରିବ । ବାଟ ଅବାଟ ମାଡ଼ି ଚାଲିଛି । ଦେହ କାଲମାରି ଯାଉଛି । ତା ଆଖି ଆଗରେ ଖାଲି ସାଧବର ମୂର୍ତ୍ତି । ତା'ର କଳ୍ପିତ ଜ୍ୱରମୁକ୍ତ ରୂପଟି ତାକୁ ଆଗକୁ ଆଗକୁ ବାଟ କଢ଼େଇ ନେଇଯାଉଛି । ଔଷଧ ଶିଶିଟିରେ ପାଣି ପଶିଯିବା ଭୟରେ ତାକୁ ଭଲ ରକମ ଘୋଡ଼ାଇ ରଖିବା ଛଡ଼ା ତା'ର ଆଉ କୌଣସିଥିକି ଯତ୍ନ ନାହିଁ, ଚାଲିଛି ।

ଘଡି ଦୁଇଘଡ଼ି ସରିକି ମଧୁଆ ନିଧି ବେହେରା ଘରେ ଔଷଧ ଶିଶି ଧରି ପହଞ୍ଚିଲା । ଓଦାଲୁଗା ଦେହରେ ଲଗି ଯାଇଛି । ଶେଷ ଆଡ଼କୁ ଟିକିଏ ବର୍ଷା ଛାଡ଼ିଯାଇ ଥିବାରୁ ଲୁଗାରୁ ଆଉ ପାଣି ଗଡ଼ୁନାହିଁ, ଆଗ ପାଣିଗୁଡ଼ାକ ଶୁଖି ଯାଇଛି । ମଧୁଆ ନିଧି ବେହେରାକୁ କହିଲା, "କକା, କଟିରିରେ କାମ ଥିଲା ଯେ ଗଡ଼କୁ ଯାଇଥିଲି । ଯାଇଥିଲି ତ, ଡାକ୍ତରଠୁ ଏ ତୋର ଔଷଧ ଘେନି ଆସିଛି । ବୈଦ ଓଷଦରେ ଜର ଛାଡ଼ୁନାହିଁ, ବିଚାରିଲି, ଡାକ୍ତର ଔଷଧ ନେଇ-ଯାଏ । କହି ଡାକ୍ତରଠୁ ଭଲ ଓଷଧ ଆଣିଛି ।" ନିଧି ବେହେରା ଝିଅ ପାଖେ ବସିଥିଲା । ମଧୁଆର କଥାଗୁଡ଼ାକ ଶୁଣି ତାହାର ଆନ୍ତରିକ ଅର୍ଥରେ ତାକୁ ଗ୍ରହଣ କଲା । ମଧୁଆ ଭବିଥିଲା, ସାଧବ ତା କଥା ଓ ସ୍ୱର ଶୁଣି ତର ତର ହୋଇ ତା ଆଡ଼େ ଚାହିଁବ ଓ କୃତଜ୍ଞତା ଦୃଷ୍ଟି ତା ଆଡ଼େ ପକେଇବ । କିନ୍ତୁ ତା ଉପସ୍ଥିତି ଏବଂ କଥାବାର୍ତ୍ତା ସତ୍ତ୍ୱେ ସାଧବ ସେହିପରି ଅନ୍ୟଆଡ଼େ ମୁହଁ କରି ଶୋଇ ରହିବାରୁ ମଧୁ ଭବିଲା, ଜ୍ୱର ପ୍ରକୋପରେ ଇଚ୍ଛାସତ୍ତ୍ୱେ ସେ ଏଆଡ଼ ମୁହଁ କରି ପାରୁ ନାହିଁ । ସେ ବିଷୟରେ ବେଶୀ ଚିନ୍ତା ଓ ଆଶଙ୍କା ନକରି ଲୁଗା ପାଲଟିବା ପାଇଁ ଆଖଡ଼ା ଘରକୁ ଗଲା ।

ଲୁଗା ପାଲଟୁ ପାଲଟୁ ତା ଦେହ ଶୀତେଇଲା । ଆଖଡ଼ାଘରେ ଘଡି କଟାଇବା ଏବଂ ସାଧବ କଥା ବୁଝାସୁଝା କରିବା ବାସନା ବାଧ୍ୟ ହୋଇ ଛାଡ଼ି ସେ ଗାଁକୁ ବାହାରିଲା । ଘରେ ପହଞ୍ଚିବାରେ ମଧୁଆ ମା ମୁନ୍ଦୁର ଏବଂ ତା ଉପରେ ଖଣ୍ଡେ କନ୍ଥା ପକାଇ ଦେଲା । ମଧୁ କର୍ମି କର୍ମି ସେଥିରେ ଶୋଇ-ପଡ଼ିଲା । ମାଆ ଶେଯରେ ବସି ଗୋଡ଼ରେ ହାତ ବୁଲାଇବାକୁ ଲାଗିଲା । ମଧୁଆକୁ ଭରି ଜର ।

ମଧୁ ଯେଉଁ ବିଛଣାରେ ଶୋଇଥିଲା, ସେଇଥିରେ ଚାରି ପାଞ୍ଚଦିନ କଟି ଗଲଣି । ଜର ବେଳକୁ ବେଳ ବଢ଼ୁଛି । ମାଆଟା ବୈଦମାନଙ୍କୁ ଡାକି ଡାକି ଥକି ଗଲଣି । କିଏ କେତେ ପ୍ରକାର ବତାଉଛି, କୌଣସିଥିରେ ଭଲ ହେଉ-ନାହିଁ । ଜରଟା ସନ୍ନିପାତ ଆଡ଼କୁ ଯାଉଛି ବୋଲି ବୈଦ୍ୟଙ୍କର ବିଶ୍ୱାସ, କିନ୍ତୁ ମା'କୁ ସମସ୍ତେ ଆଶା ଏବଂ ସାନ୍ତ୍ୱନା ଦେଉଛନ୍ତି । ମା'ର ଖାଇବା ପିଇବା ନାହିଁ, ରାତିରେ ନିଦ ନାହିଁ । ନାନା ରକମ ପାପଚିନ୍ତା କରି କାନ୍ଦି ପକାଉଛି । ସ୍ୱାମୀ ଚାଲିଯିବାର ଯୋଡ଼େ ବର୍ଷ ବି ହୋଇ ନାହିଁ, ଭଗବାନ ପୁଣି ଏ କଷ୍ଟ ଲେଖୁଛନ୍ତି ?

ରୋଗୀର ଅଧିକାଂଶ ସମୟ ଜ୍ଞାନ ନାହିଁ । ନିଦ୍ରା ମୋହରେ ସେ ନିଶ୍ଚେଷ୍ଟ, କିନ୍ତୁ ମନେ ମନେ ତାର ସ୍ୱପ୍ନ ଏବଂ କଳ୍ପନା ଯେ କେତେ କଣ ସୃଷ୍ଟି କରୁଛି, ତାହା କିଏ କହିବ ? ଜୀବନର ଅତୀତ, ବର୍ତ୍ତମାନ, ଭବିଷ୍ୟତର ସମସ୍ତ ସ୍ମୃତି ଏବଂ କଳ୍ପନା ଚଳଚ୍ଚିତ୍ର ପରି ତା' ମନ ଆଗରେ ଚାଲି ଯାଉଚି । ପୁଣି ବେଳେ ବେଳେ ଅନ୍ୟ ରୂପ ଧରି ଫେରି ଆସୁଚି । ବେଶୀ ସମୟରେ ସେ ଦେଖୁଛି, ତାର ପ୍ରିୟତର ଆଖଡ଼ାର ଚିତ୍ର, ଆଗାମୀ ରଜ ଯାତ୍ରା ନାଟର ଚିତ୍ର । ସେ ପୀଡ଼ିତ ଶଯ୍ୟାଶାୟୀ ଅଛି ବୋଲି ଭାବି ପାରୁନାହିଁ । ସେ କେତେବେଳେ ଗୀତ ବୋଲୁଚି, ମନେ ମନେ ଅଭିନୟ କରୁଚି, ମନ୍ତ୍ରୀ ପୋଷାକ ପିନ୍ଧି ନିଜର ରୂପ ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହେଉଚି ।

ମନର ପ୍ରତିମା ସାଧବ ତାର ହୃଦୟଟାକୁ ମାଡ଼ି ବସିଚି । ଜ୍ୱରର କୋପ ଏବଂ କଷ୍ଟ ସେଥିଯୋଗୁଁ ତାକୁ ବୋଧ ହେଉ ନାହିଁ । ତା'ର ସସ୍ନେହ ଦୃଷ୍ଟି ତା'ର କୋମଳ ସ୍ୱର ତା ସ୍ମୃତିରେ ସବୁବେଳେ ଜାଗରୁକ ରହିଚି । ପୁଣି ଅବସ୍ଥାନ୍ତରରେ ସେ ଦେଖିପାରୁଚି, ସାଧବ ତା ରୋଗଶଯ୍ୟା ନିକଟରେ ଆସି ଠିଆ ହୋଇଚି ଏବଂ କହୁଚି, "ମଧୁଆ, ପରଦିନ ପରା ରଜ ହେବ ? ତୁ ଏଠି ଶୋଇଛୁ କିଆଁ ?" ମଧୁ ହଠାତ୍ ଉଠି ଚାଲିଯିବ ବୋଲି ଚେଷ୍ଟା କରୁଚି, ପାରୁନାହିଁ । ସାଧବକୁ ତା ହାତଧରି ଉଠାଇ ଦେବାକୁ କହିବାକୁ ଇଚ୍ଛା କରି ମୁହଁ ଫେରାଇ ଦେଖେ ତ ସାଧବ ନାହିଁ । ମା'ର କରୁଣ-ମୂର୍ତ୍ତିଟି ପାଖରେ—ଗୋଟିଏ ହାତରେ ତା' ଗୋଡରେ ହାତ ବୁଲାଉଚି । ପଡ଼ିଶା ଘରମାନଙ୍କରୁ ଦୁଇ ଚାରି ମାଇପି ମଧ୍ୟ ଆସି ସେଠି ଠିଆ ହୋଇଚନ୍ତି, ରୋଗୀକୁ ଦେଖିବାକୁ । ମଧୁଆ ସେମାନଙ୍କ ଭିତରୁ ସାଧବ କେଉଁଠି ଦେଖିବାକୁ ଥରେ ଭଲକରି ଆଖି ବୁଲାଇ ନେଲା । ନ ଦେଖି ଆଖି ବୁଜି ମୁହଁ ବୁଲାଇ ଦେଲା ।

ଟିକିଏ ଚେତା ଆସିଲା, ହଠାତ୍ ଯନ୍ତ୍ରଣା ବଢ଼ିଗଲା । ସେ କଣ ତେବେ ସତେ ଶଯ୍ୟାଶାୟୀ ରୋଗୀ, ଆଉ ନାଟରେ ଯୋଗ ଦେବାର ତା'ର ଆଶା ନାହିଁ !! ସାଧବକୁ ସେ କଣ ହତାଶ କରିବ ! ସାଧବ ଏତେ ଦିନ ହେଲା ମଧୁଆକୁ ନୂଆ ପୋଷାକରେ ନାଚିବା ଦେଖିବାକୁ ଆଶା ପୋଷଣ କରିଚି । ସେ ତ ତାକୁ ନ ଦେଖି ମନ କଷ୍ଟରେ ସଢ଼ିଯିବ ! ଭବୁ ଭବୁ ଆଖିରୁ ଦୁଇଟୋପା ଲୁହ ଶେପକୁ ଗଡ଼ିପଡ଼ିଲା । ମା ପଣତରେ ଓଦା ଆଖି ଦୁଇଟି ପୋଛିଦେବା ବେଳେ ତା' ନିଜ ଆଖି ଦୁଇଟି ଲେତକରେ ଓଦା ହୋଇ ସେହିପରି ଯୋଡ଼ିଏ ଟୋପା ଲୁଗାରେ ଖସି ପଡ଼ିଲା ।

ମଧୁଆ ଭବୁଚି, ସାଧବ ତା' ଜ୍ୱର କଥା ଜାଣି ନପାରି ତା' ଉପରେ କ୍ରୁଦ୍ଧ ହୋଇପାରେ । ଇଚ୍ଛା, ଜଣକୁ ପଠାଇ ନିଧି ବେହେରାକୁ ଖବର ଦିଅନ୍ତା ଯେ, ସେ ଭରି ଜ୍ୱରରେ ପଡ଼ିଛି ; କିନ୍ତୁ କଥା କହିବାର ଶକ୍ତି ନାହିଁ । ହେଉ, ଜ୍ୱର ଭଲ ହୋଇଗଲେ ଯାଇ ସାଧବକୁ ସବୁକଥା କହିବ, କୁଆଁର ପୁନିଅଁ ନାଟରେ ସେ କିପରି ଆଉରି ଭଲ ପୋଷାକ ପିନ୍ଧି ବାହାରିବ, ଏହା କହି ତାକୁ ସାନ୍ତ୍ୱନା ଦେବ । ସାଧବ ତା' କଥା ନିଶ୍ଚୟ ବୁଝିବ ।

ରାତ ରାତିଟାଯାକ ରୋଗୀ ଯନ୍ତ୍ରଣାରେ ସ୍ଥିର ହୋଇ ପାରିନାହିଁ । ସନ୍ନିପାତ ରୋଗୀ, ପାଣି ପିଇବାର ଅଭିନୟ କରୁଚି । ପିଇବା ପାଇଁ ମାଆ ଆଡ଼କୁ ସତୃଷ୍ଣ ଦୃଷ୍ଟି ପକାଉଚି । ବୈଦ୍ୟର ମନା ପାଣି ଦେବାକୁ । ମା ଦେବ କିପରି ? କାଳେ କଣ ନା କଣ ହୋଇଯିବ ! ରାତି ପାହିବା ସଙ୍ଗେ ସଙ୍ଗେ ତାର ମା ବୈଦ୍ୟଙ୍କଠାରୁ ବୁଝି ଆସିଲା, ସେ ଦେଇଥିବା ପାଚନର ପାଣି ପିଇବାକୁ ଦିଆଯାଇ ପାରେ । ତେଣୁ ତର ତର ହୋଇ ଚୂଲି ଲଗାଇ ମାଆ ପାଚନ ସିଝାଇବାରେ ଲଗିଚି । ବହୁତ କାନ୍ଦି କାନ୍ଦି, ବହୁତ ଲଗିଛି । ଆଉ ତାର ଗ୍ରଞ୍ଜଲ ନାହିଁ । ଆଖିରୁ ମଧ ଲୁହ ବହୁ ନାହିଁ । ଆଶଙ୍କିତ ବଜ୍ରପାତ ପାଇଁ ପ୍ରସ୍ତୁତ ହୋଇ ଗଲଣି ପରା !

ସାଧୁଆ ମଧୁ ଶୋଇବା ଘରେ ବସିଥିଲା । ରୋଷେଇ ଘରେ ମାଆ ଚୂଲି ଫୁଙ୍କିବା ବେଳକୁ ଛନ୍ନ ହୋଇ କରି ଡାକ ପକାଇଲା, "ମାଆ, ଭଇ କଣ ହୋଇଯାଉଚି ।" ମାଆ ଧାଇଁ ଆସିଲା । ତାପରେ ମା ଏବଂ ସାଧୁଆର ଉଚ୍ଚ କରୁଣ କ୍ରନ୍ଦନ ଗାଁଟାଯାକ ବ୍ୟାପିଗଲା । ସମସ୍ତେ ଧାଇଁ ଆସିଲେ ।

ଡାକ୍ତରୀ ଔଷଧ ଅଧେ ଖାଇବା ପରେ ସାଧବର ଜର ୫।୬ ଦିନ ହେଲା ଛାଡ଼ି ଗଲାଣି । ଆଜି ଦହି ବିକିଯିବ ବୋଲି ବାହାରିଚି ।

ସାଧବ ଦାଣ୍ଡରୁ ଶୁଣି ଆସି ତା ମାଆକୁ କହିଲା, ''ମାଆଲୋ, ଆମ ଗାଁ ଆଖଡ଼ାରେ ନାଟ କରିବାକୁ ବାଟଗାଁରୁ ଯୁଏ ମଧୁଆ ଆସେ ନି, ସେ ଆଜି ମରିଗଲା ।'' ମା କହିଲା, ''ଆଲୋ ତୁ ପରା ସେ ଗାଁ ବାଟେ, ବ୍ରାହ୍ମଣ ଗାଁକୁ ଦହି ବିକି ଯିବୁ, ମଶାଣିଟା ବାଟରେ, ଡ଼ରିବୁନିତ ?''

ସାଧବ—'ନାଇଁମ, ଡର କଣ ? ମୁଁ କେତେଥର ମୁର୍ଦାର ପୋଡ଼ା ବେଳେ ସେବାଟେ ଯାଇଛି ଯେ ।'



# ଶେଷ କାମନା

(ନବଭରତ, ମୀନ ୧୩୪୧)

( ୧ )

ଗାଁଟାଯାକ ହଟା ପଡ଼ିଛି, ରାମ ପାଡ଼ୁଷୀଙ୍କ ଘରକୁ ଜ୍ୱାଇଁ ଆସିଛି ଝିଅ ଦେଖିବାକୁ । ଯେ ଶୁଣୁଛି ସେ କାବା ହେଉଛି ; କିଏ ମୁରୁକି ହସା ଦେଉଛି, କିଏ ପଛରେ ଗାଳି ଦେଉଛି । ପାଡ଼ୁଷୀଙ୍କୁ ନ ଦେଖି ପାରିବା ଲୋକେ କେତେ ଢ଼ଗ ଢ଼ମାଳି ମେଲି ବସୁଛନ୍ତି । ବୁଢ଼ା ଗଇଗୁରୁଏ ସଫା କହିଦେଲେ ସେ ଜ୍ୱାଇଁ ଟୋକା ଯିମିତି ନିଲଜ, ଏ ରାମ ବି ସେମିତି ଅଲଜୁକ । ଝିଅଟାକୁ କଣ ବରଟାଏ ମିଳୁ ନ ଥିଲା ? ଏଥିରୁ ଗୋଟାଏ କିରସ୍ତାନ ମାଷ୍ଟ୍ରାନ ଝିଅ ଦେଖିବାକୁ ଡ଼ାକି ଆଣିଛି ।" ବିଭଘରର ନାଁ ନାହିଁ, ଗାଁ ନାହିଁ—ଝିଅ ଜ୍ୱାଇଁଙ୍କର ମିଳନ ହେବ, କଥାବାର୍ତ୍ତା ହେବ । ଜ୍ୱାଇଁ ଜିଦ୍ ଧରି ବସିଲା, "ମୁଁ କନ୍ୟା ନ ଦେଖିଲେ ବିଭ ହେବି ନାହିଁ ।" ପାଡୁଷୀଏ ପ୍ରଥମେ ଟିକିଏ ଟିକିଏ ଅଡ଼ୁଆ ବୋଧ କରୁଥିଲେ ; କିନ୍ତୁ ପାତ୍ରଟିକୁ ଉପଯୁକ୍ତ ଦେଖି ଝିଅଟିକୁ ସତ୍ପାତ୍ରସ୍ଥ କରିବା ଉଦ୍ଦେଶ୍ୟରେ ମଙ୍ଗିଗଲେ ।

ପ୍ରସ୍ତାବିତ ଜ୍ୱାଇଁଙ୍କ ନାମ ଆନନ୍ଦ ନନ୍ଦ, ଜିଲାବୋଡ଼ ପ୍ରାଇମେରି ସ୍କୁଲର ଶିକ୍ଷକ, ଦେଖିବାକୁ ସୁପୁରୁଷ, ବ୍ୟବହାର ଭଦ୍ରୋଚିତ, ସ୍ୱଭବରେ ବିନୟୀ । ପରିବାରରେ ଏକମାତ୍ର ପୁତ୍ରବତ୍ସଳା ବିଧବା ମାତା । ଆନନ୍ଦ ଯୁବକ, ନବୀନ ଯୁଗର ଯୁବକ । ତାଙ୍କର ରୁଚି ସେ ନିଜେ ଦେଖି ରୁହିଁ ତାଙ୍କର ସହଧର୍ମିଣୀ ନିର୍ବାଚନ କରିବେ । ଆଜି ସେହି ଉଦ୍ଦେଶ୍ୟରେ ସେ ରାମପାଡ଼ୁଷୀଙ୍କର ଦ୍ୱାରସ୍ଥ ।

ରାମ ପାଡ଼ୁଷୀଙ୍କ ଏକମାତ୍ର କନ୍ୟା ବିମଳା ପାଡ଼ୁଷୀଙ୍କର ପ୍ରଥମ ସନ୍ତାନ, ପିଲାଦିନୁଁ ଅତି ଯତ୍ନରେ ପାଳିତା । ବିମଳା ଅତି ଯତ୍ନର ଅପବ୍ୟବହାର

କରି ନାହି । ସେ ଧୀର, ବୁଦ୍ଧିମତୀ, ରୂପରେ ଦମୟନ୍ତୀ ନ ହେଲେ ମଧ୍ୟ ଅସୁନ୍ଦରୀ ନୁହେଁ, ପାଡ଼ୁଣୀଙ୍କ ଯତ୍ନରେ ସାମାନ୍ୟ ଶିକ୍ଷିତା । ସଂକ୍ଷେପରେ ସେ ଗୋଟିଏ ନବୀନ ଯୁଗର ଯୁବକର ଉପଯୁକ୍ତ ବୋଲି ବିବେଚିତ ହୋଇପାରେ ।

ପାଡ଼ୁଣୀ ଆଗରୁ ଠିକ୍ ବୁଝିଥିଲେ ଆନନ୍ଦ ତାଙ୍କ କନ୍ୟାର ପାଣି ଗ୍ରହଣ କରିବାକୁ ସଂପୂର୍ଣ୍ଣ ରାଜି ; କିନ୍ତୁ ତତ୍‌ପୂର୍ବରୁ ସେ ବାଳିକାଟିକି ଦେଖି ଶେଷ ମତ ଦେବେ । ପାଡ଼ୁଣୀଏ ମଧ୍ୟ ନିଜ କନ୍ୟାର ରୂପ, ଶିକ୍ଷା, ଜ୍ଞାନ, ବ୍ୟବହାର ପ୍ରଭୃତି ବିଷୟରେ ଏତେ ସ୍ଥିର ବିଶ୍ୱାସ ଥିଲେ ଯେ, ଆନନ୍ଦଙ୍କ ସରଜମିନ ତଦନ୍ତ ପ୍ରତି ଆଦୌ ସନ୍ତୁଷ୍ଟ ନ ଥିଲେ । ବରଂ ଆନନ୍ଦଙ୍କର ମତି ଗତିକୁ ଲକ୍ଷ୍ୟ କରି ସେ ବୁଝିନେଇଥିଲେ ଯେ, ବିମଳା ତାଙ୍କର ପୂର୍ଣ୍ଣରୂପେ ମନୋନୀତ ହେବ । ତାଙ୍କର ଭୟ ନ ଥିଲା । ଅବାଧରେ ଆନନ୍ଦ ତାଙ୍କ ସମ୍ମତି ପାଇ କନ୍ୟା ଦେଖି ଶେଷ ସ୍ୱୀକାର ଦେଇ ଚାଲିଗଲେ ।

ଆନନ୍ଦ ସିନା ଚାଲିଗଲେ, ବିମଳା ଯାଉଚି କୁଆଡ଼େ ? ତିନି ଦିନ ପର୍ଯ୍ୟନ୍ତ ଗାଁଯାକ ସେଇ କଥା ହୁରି ପଡ଼ିଛି । କେଉଁଠି ବୁଢ଼ୀ ପଞ୍ଚାକ, କେଉଁଠି ଟୋକି ମେଞ୍ଚାକ, ସମସ୍ତଙ୍କ ମୁହଁରେ ବିମଳା କଥା । ଟୋକିଏ କହୁଛନ୍ତି—ବିମଳା, କେଡ଼େ ନିଲଜୀ କି଼ଲେ, ସେ ବର ଆଗକୁ ବେଶ ହୋଇ ଗଲା କିମିତି ମ ? କିଏ ବିମଳାର ବର ଆଗରେ କଥାବାର୍ତ୍ତା ହେବା କଥା, କିଏ ପାଠୁଆ ବର ପାଇ ଉପୁଡ଼ଙ୍ଗ ହୋଇ ଚାଲୁଥିବା କଥା, କିଏ ତାର ବାପ ଆଗରେ ଗୀତ ପୁରାଣ ବୋଲିବା କଥା ଆଲୋଚନା କରି ଯାଉଛି । କେତେ ହସ କୁରୁଡ଼ି ହେଉଚି, କେତେ ଗାଳି ଗୁଲଜ ହେଉଚି, ଗାଁ ମାଇପିଗୁଡ଼ାକ ବିମଳା ବୋଉକୁ ବାଟ ଚଲାଇ ଦେଉ ନାହାନ୍ତି, ଯାକୁ ତାକୁ ଦେଖେଇ ଶିଖେଇ ସେମାନେ ଝିଅମାନଙ୍କୁ କିମିତି ବଢ଼ିଆ କରି ଦେଉଛନ୍ତି, ମାଆମାନେ ଝିଅଙ୍କୁ କିମିତି ଆଜିକାଲି ନିଲଜୀ କରି ଦେଉଛନ୍ତି, କହି ହେଉଛନ୍ତି । ବିମଳା ଆଉ ବିମଳା ବୋଉ ଦାଣ୍ଡକୁ ବାହାରି ପାରୁ ନାହାନ୍ତି ; ନିତାନ୍ତ କାମ ପଡ଼ିଲେ ବାହାରକୁ ବାହାରିଲେ ସବୁ କଥା ଶୁଣି ନ ଶୁଣିଲା ପରି ଚାଲି ଯାଉଛନ୍ତି ; ବିମଳା ବୋଉ ଆଉ ସହି ନ ପାରି ବିମଳା ନନାକୁ କହିଲେ "ହଇ ହେ, ତୁମକୁ କଣ ମୋ ବିମଳା ପାଇଁ ବର ମିଳୁ ନ ଥିଲା ? ତମ ଯୋଗୁ ମୋତେ ଏ ନିଆଁଲଗା ଗାଁ ଲୋକେ ଚଲେଇ ଦେଉ ନାହାନ୍ତି । ପାଡ଼ୁଣୀଏ କହିଲେ "ଗାଁ ଲୋକେ କହୁଥାନ୍ତୁ । ମୋ ଝିଅକୁ ଯଦି ମୋ ଜୁଆଇଁ ଭଲପାଇବ, ଆମେ ସବୁ ପାଇଲେଇଁ, ଏଗୁଡ଼ାଙ୍କ କଥାରୁ କଣ ପାଇବା ?" ବିମଳାର ମା ଟିକିଏ ଆଶ୍ୱସ୍ତ ହେଲେ ।

ଆନନ୍ଦ ବଡ଼ କଳ୍ପନା-ପ୍ରିୟ ଯୁବକ । ତାହାର ଭବିଷ୍ୟତ ସଙ୍ଗିନୀକୁ ଆଦର୍ଶ ନାରୀ ଗଢ଼ିବା ପାଇଁ ସେ ମନେ ମନେ କାର୍ଯ୍ୟପନ୍ଥା ସ୍ଥିର କରୁଚି । ବିମଳା ୧୧ ବର୍ଷର ବାଳିକା ଏବଂ ସେ ଦୁର୍ବିମତା । ତାହାକୁ ନବୀନ ଭବରେ ସୁଗୃହିଣୀ କରିବାର ଅଭିଳାଷକୁ ସେ କାର୍ଯ୍ୟରେ ପରିଣତ କରିବାକୁ ଲଗିଲ । ବିମଳାକୁ ଦେଖି ଆସିବାର ୨।୩ ଦିନ ପରେ ଚିଠି ଦେଲ—

ବିମଳେ !

ତମକୁ ପାଇ ମୁଁ ଧନ୍ୟ ହେବାକୁ ଯାଉଛି । ତମେ ସୁଗୃହିଣୀ ଏବଂ ଆଦର୍ଶ ନାରୀ ହୋଇ ପାରିଲେ, ମୁଁ ସ୍ୱର୍ଗସୁଖ ଲଭ କରିବି । × × × ଏଥିସଙ୍ଗେ ସୀତା, ସାବିତ୍ରୀ ପ୍ରଭୃତିଙ୍କ ଚରିତ୍ର କେତେ ଖଣ୍ଡ ପଠାଇଲି । ଶୀଘ୍ର ପତ୍ର ଦେବ । । ଇତି ।

ତମର
ଆନନ୍ଦ

ବିମଳା ଉତ୍ତର ଦେଲ—

ପୂଜ୍ୟପାଦ,

ମୁଁ ନିଜେ କିଛି ହୋଇ ପାରିବି ନାହିଁ । ତମେ ମୋତେ ଯାହା କରିବାକୁ ଆଦେଶ ଦେବ, ତାହା କରିବି । ଯେପରି ହେବାକୁ ଆଜ୍ଞା କରିବ, ସେପରି ହେବି । × × × ।

ପଦପ୍ରାର୍ଥିନୀ
ବିମଳା

ସମ୍ବନ୍ଧ ଟିକିଏ ନିକଟତର ହୋଇ ଆସିବାରୁ ଖଣ୍ଡିଏ ପତ୍ରରେ ଆନନ୍ଦ ଲେଖିଲ—

ପ୍ରିୟେ,

ମୁଁ ତମ ପାଇଁ ଗୋଟିଏ ସତ୍‌ପାତ୍ର ପାଇଛି, ସେ ଧନିପୁତ୍ର, ସୁନ୍ଦର ଏବଂ କଲେଜରେ ପଢ଼ନ୍ତି । ମୋ ବିଶ୍ୱରରେ ତମେ ତାଙ୍କୁହିଁ ବିବାହ କର । ମୁଁ ମଧ୍ୟ ଅନ୍ୟକୁ ବିବାହ କରିବାକୁ ମନେ ମନେ ସ୍ଥିର କରିଛି । ଉତ୍ତର ଶୀଘ୍ର ଦେଲେ ମୁଁ ସେ ପାତ୍ରଙ୍କୁ ତମ ଘରଠାକୁ ପଠାଇ ଦେବି । ଇତି ।

ବିମଳାର ଉତ୍ତର—

ପ୍ରିୟତମ,

ତମେ ଅନ୍ୟତ୍ର ବିବାହ କରିପାର, କିନ୍ତୁ ମୁଁ ତମକୁ ମନେ ମନେ ଆଗରୁ ବିବାହ କରିସାରିଛି । ହିନ୍ଦୁ ସ୍ତ୍ରୀ ଦ୍ୱିତୀୟ ଥର ବିବାହ କରିପାରେ ନାହିଁ । ମୁଁ ତମ ପାଇଁ ଚିରକୁମାରୀ ରହି ପାରିବି ।

ଏ ପତ୍ର ପାଇ ଆନନ୍ଦ ପରମ ଖୁସୀ ହେଲା ।

ଶେଷ ପତ୍ରରେ ଆନନ୍ଦ ଲେଖିଲେ ଯେ, ବିବାହ ଦିନ ଭଲ ନ ଥିବାରୁ ବିବାହ ୬ ମାସ ପାଇଁ ବନ୍ଦ ରହୁଚି । ଏ ସମୟ ମଧ୍ୟରେ ବିମଳା ଅଙ୍କଟକ ଶେଷ କରିବା ଉଚିତ, ଇଂରେଜି ଲେଖା ପଢ଼ାରେ ମନ ଦେବା ଉଚିତ । ବିମଳାର ପିତା ବିବାହ ଆୟୋଜନରେ ଲଗିଲେ । ବିମଳା ସ୍ୱାମୀଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳିବାକୁ ଲଗିଲା ।

( ୨ )

ରମ ପାଢ଼ୁଣୀଙ୍କ ଭଣଜା ବିଶ୍ୱନାଥ ଡିଷ୍ଟ୍ରିକ୍ଟବୋର୍ଡ ପ୍ରାଇମେରୀ ସ୍କୁଲର ଜଣେ ଶିକ୍ଷକ ଏବଂ ଆନନ୍ଦଙ୍କ ସଙ୍ଗୀ । ଆନନ୍ଦ ବିଶ୍ୱନାଥଙ୍କ ହାତରେ ଖଣ୍ଡେ ପତ୍ର ଦେଇଚନ୍ତି ଏବଂ କିଛି ସମ୍ବାଦ ପଠାଇଛନ୍ତି । ବଡ଼ଦିନ ଛୁଟିରେ ବିଶ୍ୱନାଥ ଗାଁକୁ ଆସୁଥିଲେ, ଆନନ୍ଦଙ୍କଠାରୁ ବାଟରୁ ଏ ପତ୍ର ଓ ସମ୍ବାଦ ଆଣିଚନ୍ତି । ବିଶ୍ୱନାଥ ସଙ୍ଗେ ସଙ୍ଗେ ଆସି ପାଢ଼ୁଣୀଙ୍କ ହାତକୁ ଚିଠି ଖଣ୍ଡ ବଢ଼ାଇ ଦେଲେ । ଚିଠି ପଢ଼ି ପାଢ଼ୁଣୀ ଅବାକ୍ ହୋଇଗଲେ । ଆନନ୍ଦ ଲେଖିଛନ୍ତି, ନାନା କାରଣରୁ ସେ ବିମଳାକୁ ବିବାହ କରି ପାରିବେ ନାହିଁ । ତାଙ୍କର ଅତୀତ ବ୍ୟବହାରକୁ କ୍ଷମା ଦେବେ ଏବଂ ବିମଳାର ଅନ୍ୟତ୍ର ବିବାହର ବ୍ୟବସ୍ଥା କରିବେ । ଚିଠି ପଢ଼ି ପାଢ଼ୁଣୀଙ୍କ ଘରେ ଚୁଲି ଜଳୁନାହିଁ । ପାଢ଼ୁଣୀ ମୂକ ପରି ବସିଚନ୍ତି । ବିମଳାର ମା ବିମଳାକୁ ଦେଖି କାନ୍ଦି ପକାଉଚନ୍ତି । ବିମଳା ନୀରବରେ ବସି ଅଶ୍ରୁମୋଚନ କରୁଚି । ଉପାୟ ଆଉ କଣ ? ଝିଅର ବୟସ ହୋଇଗଲାଣି । ବ୍ରାହ୍ମଣ ଘର, ବେଶୀ ଦିନ ରହି ହେବ ନାହିଁ । ପାଢ଼ୁଣୀଙ୍କ ମୁଣ୍ଡ ବାତଚକ୍ର ପରି ବୁଲୁଚି । ଭାବୁଚନ୍ତି, ଏ କଳିକାଳିଆ ଟୋକାକୁ ସେ ବିଶ୍ୱାସ କଲେ କାହିଁକି ? ଅନ୍ୟ ବରଟିଏ ପାଇବା ତାଙ୍କ ପକ୍ଷରେ ମହା ମୁସ୍କିଲ ହେବ । ସମସ୍ତେ ଭାବିବେ, କନ୍ୟାର କିଛି ଦୋଷ ଥିବାରୁ ତାକୁ ପ୍ରଥମ ବର ଗ୍ରହଣ କଲା-ନାହିଁ ।

ଏ ସମ୍ବାଦରେ କେତେକ ଅସହଣିକ ଖଳ ଲୋକେ ଆନନ୍ଦ ପାଇଲେ । ଏତେ ସୁଆଗ, ଦେଖା ଗଲା, ଚିଠିପତ୍ର ଏକାବେଳକେ ମୁହୂର୍ତ୍ତକେ ଧୂଆଁ ପାଲଟି ଗଲା । ଏହା ଶୁଣି ଅନେକେ ଚୁ ଚୁ ଲି ଆରମ୍ଭ କଲେ । ପାଢ଼ୁଣୀ ବର୍ତ୍ତମାନ କରନ୍ତି କଣ ?

ବିଶ୍ୱନାଥ ପାଖରୁ ପଗ୍ଚରିବାରେ ଶୁଣାଗଲା ନନ୍ଦପୁର ସରବରାକାର ଶ୍ୟାମ ରଥଙ୍କର କନ୍ୟା ରୂପବତୀ, ଶିକ୍ଷିତା । ସେ ମଧ୍ୟ ଆନନ୍ଦଙ୍କୁ କିଛି ଆର୍ଥିକ ସାହାଯ୍ୟ କରିବେ, ଆନନ୍ଦ ସେହିଠାରେ ବିବାହ କରିବାର ସ୍ଥିର କରିଅଛନ୍ତି । ତାଙ୍କ ମାଆ ତାଙ୍କୁ ଏ ବିଷୟରେ ବାଧ୍ୟ କଲେ ।

ପାତ୍ରାକ୍ଷୀ ଭାବିଲେ ସେ ଦରିଦ୍ର, ସେଥିପାଇଁ ସେ ଉପେକ୍ଷିତ ହେଲେ । ଯାହା ହେଉ, ବାଧ୍ୟ ହୋଇ ଅନ୍ୟ ବର ଖୋଜିବାରେ ପାତ୍ରାକ୍ଷୀ ଲାଗିଲେ । ଆଉ ଭଲ ପ୍ରସଙ୍ଗ ତ ମିଳୁ ନାହିଁ । ଯେ କେତୋଟି ପ୍ରସଙ୍ଗକୁ ପାତ୍ରାକ୍ଷୀ ନାହିଁ କରି ଦେଇଥିଲେ, ଏବେ ତାଙ୍କ ଦ୍ୱାରସ୍ଥ ହେଲେ ମଧ୍ୟ, ସେ ଅମଙ୍ଗ ହେଲେ । ଶେଷରେ ପାତ୍ରାକ୍ଷୀ ଗୋଟିଏ ଅଳ୍ପ ଶିକ୍ଷିତ, ମଧ୍ୟବିତ୍ତ ପାତ୍ର ବିମଳା ପାଇଁ ବହୁ କଷ୍ଟରେ ସ୍ଥିର କଲେ ।

ବିମଳା ଅତି ବିଷାଦରେ ଦିନ ଯାପନ କରୁଚି । ତାହାର ପଢ଼ାପଢ଼ି ଓ ଅନ୍ୟାନ୍ୟ ହାତ କାମ ପ୍ରଭୃତି ସବୁ ଏକାବେଳକେ ବନ୍ଦ । ସେ ମନେ ମନେ ଭାବିଚି, ତା'ର ଜୀବନରେ ଆଉ ସୁଖ ନାହିଁ । ସେ ଆଉ କାହାକୁ ବିବାହ କରି ସୁଖୀ ହୋଇ ପାରିବ ନାହିଁ । ଏକାବେଳକେ ବିବାହ ନ କରିବ ବୋଲି ବାପ ମାଙ୍କୁ କହି ଦେବାକୁ ଇଚ୍ଛା, କିନ୍ତୁ ବାପମାଙ୍କ ମନରେ ଅଧିକତର କଷ୍ଟ ହେବ ଏବଂ ସମାଜରେ ଅଧିକତର ନିନ୍ଦା ହେବ, ଏଥିପାଇଁ ନୀରବ ରହିଲା । ସେହି ବାପ ମାଙ୍କ ପାଇଁ ମଧ୍ୟ ଆତ୍ମହତ୍ୟା କରିବାରୁ ନିବୃତ୍ତ ହେଲା ।

( ୩ )

ବିମଳା ତା'ର ସ୍ୱାମୀ ଗୃହରେ ଦୁଇ ଚାରି ବର୍ଷ କଟାଇଲାଣି । ତାହାର ଗୃହ ଜଞ୍ଜାଳ ଦୁଃଖେ ସୁଖେ ଚାଲିଥାଏ । କିନ୍ତୁ ମଝିରେ ମଝିରେ ମନେ ପଡ଼ିଯାଏ ତାହାର ସେ ପ୍ରସ୍ତାବିତ ସ୍ୱାମୀ ଆନନ୍ଦଙ୍କର କଥା, ସେ ମଧୁର ବ୍ୟବହାର, ମିଷ୍ଟ ଭାଷା, କମନୀୟ ମୂର୍ତ୍ତି । ସେ ଦେବତାର ସେ ପୂଜା କରି ପାରିଲା ନାହିଁ, ଏ ଦୁଃଖ ତାକୁ ଅହରହ ଦଗ୍ଧିତ କରୁଚି । ସେ ପତ୍ର କେତେ-ଖଣ୍ଡ ତା ପାଖରେ ଅଛି । ସେଗୁଡ଼ିକ ପୋଡ଼ି ନଷ୍ଟ କରିଦେବାକୁ କେତେ ଥର ଚେଷ୍ଟା କଲଣି, କିନ୍ତୁ ସେ ମହାର୍ଘ ସମ୍ପଦକୁ ନଷ୍ଟ କରିଦେବାକୁ ତାର ମନ ବଳେ ନାହିଁ । ପୁଣି ପଢ଼େ, ପୁଣି ବାକ୍ସରେ ରଖିଦିଏ । ଅନ୍ୟମାନଙ୍କ କଥାବାର୍ତ୍ତା ସମୟରେ ବେଳେ ବେଳେ ଆନନ୍ଦ କଥା ମଝିରେ ମଝିରେ ଶୁଣେ ।

ସେ କିପରି ସ୍ତ୍ରୀ ବିବାହ କରିଚନ୍ତି, ତାଙ୍କର ନବଜାତ ଶିଶୁଟି କିପରି ଅଛି, ସେ କିପରି ସୂତା କାଟି ଖଦଡ଼ ପିନ୍ଧୁଚନ୍ତି, ଏ ସବୁ ନୀରବରେ ଶୁଣେ—ଶୁଣି ଟିକିଏ ଆଶ୍ୱସ୍ତ ହୁଏ । କେତେ ଥର ସେ କୌଣସି ବାହାନାରେ ତାଙ୍କ ଘରକୁ ଯାଇ ଆନନ୍ଦଙ୍କୁ ଏବଂ ତାଙ୍କର ଅନ୍ୟାନ୍ୟ ଅବସ୍ଥାକୁ ଦେଖି ଆସିବାକୁ ଇଚ୍ଛା କଲଣି । କିନ୍ତୁ ମନରେ ନାନା ସନ୍ଦେହ ହେଉଚି । ପ୍ରଥମେ, ଆନନ୍ଦ ସଂପୂର୍ଣ୍ଣ ଭୁଲି ଯାଇ ପାରିଥାନ୍ତି । ଦ୍ୱିତୀୟରେ, ବିମଳାର ଯିବାଟାକୁ ସେ ବିଶୁଦ୍ଧ ଭାବରେ ଗ୍ରହଣ କରି ନ ପାରନ୍ତି । ତୃତୀୟରେ, ନିତାନ୍ତ ଅପରିଚିତା ସେ, ଆନନ୍ଦଙ୍କ ସଙ୍ଗେ ଆଳାପାଦି କଲେ, ଆନନ୍ଦଙ୍କ ସ୍ତ୍ରୀ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପାରନ୍ତି ଏବଂ ସନ୍ଦେହ କରି ପାରନ୍ତି । ଏ ସମସ୍ତ ଭାବି ଭାବି ବିମଳା ଦୀର୍ଘ ନିଃଶ୍ୱାସ ପକାଇ ରହେ । ନିଜର ଦୁଃଖ ସୁଖ ମଧ୍ୟରେ ଦୂରରୁ ଦେବତାଙ୍କୁ ମନେ ମନେ ପୂଜା କରୁଥାଏ ।

ବିମଳାର ସ୍ୱାମୀଙ୍କ ଗ୍ରାମରେ ଗୋଟିଏ ଜିଲ୍ଲା ବୋର୍ଡ଼ର ଉ. ପ୍ରା. ସ୍କୁଲ ଅଛି । ଆନନ୍ଦଙ୍କ ନିରଳସ ଶିକ୍ଷକତା ଓ ଦକ୍ଷତାରେ କର୍ତ୍ତୃପକ୍ଷ ସନ୍ତୁଷ୍ଟ ହୋଇ ତାଙ୍କୁ ସେ ଉ. ପ୍ରା. ସ୍କୁଲର ହେଡ଼ ପଣ୍ଡିତ କରି ବଦଳି କରି ଦେଇଛନ୍ତି । ବିମଳାଙ୍କ ସ୍ୱାମୀର ଗୃହ ଏ ଗ୍ରାମରେ ଓ ବିମଳା ଏ ଗ୍ରାମର ଜଣେ ଗୃହିଣୀ, ଏ କଥା ଆନନ୍ଦ ଜାଣନ୍ତି ନାହିଁ । ହଠାତ୍ ବିମଳା ଗୋଟିଏ ପରିଚିତ ମୂର୍ତ୍ତି ଗାଁଦାଣ୍ଡରେ ଯାଉଥିବାର ଝରକା ବାଟେ ଦେଖି ପାରିଲା, ଭଲ କରି ଦେଖି ଚିହ୍ନିଲା ସେ ତାର ଚିରଦେବତା ଆନନ୍ଦ । ଦେହ ତାର କମ୍ପି ଉଠିଲା, ଆଖି ଲୁହରେ ପୂର୍ଣ୍ଣ ହୋଇଗଲା ।

ପରେ ବୁଝିଲା, ସେ ସେ ଗ୍ରାମ ସ୍କୁଲର ନୂଆ ଶିକ୍ଷକ । ଆନନ୍ଦଙ୍କର ସ୍କୁଲ ଯିବା ଆସିବା ସମୟକୁ ବିମଳା ଚାହିଁ ବସିଥାଏ । ଝରକା ବାଟେ ଟିକିଏ ଚାହେଁ, ଦେଖିବାକୁ ପାଏ । ସେହିତକ ତାର ଅନ୍ତରର ପୂଜା ବୋଲି ସେ ଜାଣେ । ଆଉ ଅଧିକ କଣ କରି ପାରିବ ? ଆନନ୍ଦଙ୍କର ନିକଟବର୍ତ୍ତୀ ହେବ ନାହିଁ, ଏହା ସେ ଆଗରୁ ସ୍ଥିର କରିଚି ।

ଆନନ୍ଦ ଗୋଟିଏ ବସାଘର କରି ଏକା ଥାନ୍ତି । ସ୍ଥାନ ଅଭାବରୁ ନିଜ ସ୍ତ୍ରୀ ପୁତ୍ରଙ୍କୁ ଆଣି ନ ପାରି ଗାଁରେ ଛାଡ଼ି ଦେଇ ଆସିଛନ୍ତି । ମା ବୁଢ଼ୀ ବହୁତ ଆଗରୁ ଛାଡ଼ି ଚାଲି ଯାଇଛନ୍ତି । ପିଲାଙ୍କୁ ଆଣିବାପାଇଁ ସେ ଖଣ୍ଡିଏ ଭଲ ଘରର ସନ୍ଧାନରେ ଅଛନ୍ତି ।

ମାଷ୍ଟରଟି ବଡ଼ ଲୋକପ୍ରିୟ । ଆଗ ମାଷ୍ଟର ପ୍ରତି ଲୋକେ ବଡ଼ ବିରକ୍ତ ଥିଲେ । ଏ ମାଷ୍ଟର ଆସିବା ଦିନଠାରୁ ଗାଁରେ ବହୁତ ନୂଆ ନୂଆ କଥା

କରୁଛନ୍ତି । ବହୁତ ଅରଟ ଚାଲିଲଣି, ଲୁଗା ବୁଣା ହେଉଛି, ବଢ଼େଇ କାମ ପିଲମାନେ ଶିଖୁଛନ୍ତି, ଗାଁରେ କୀର୍ତ୍ତନ ହେଉଛି, ପ୍ରତିଦିନ ପୁରାଣ ପଢ଼ା ଯାଉଛି । ଯେତେବେଳେ ଦେଖିବ, ମାଷ୍ଟରଙ୍କ ଘରିପାଖେ ପଞ୍ଚାଏ ଲୋକ କଥାବାର୍ତ୍ତା ହେଉଛନ୍ତି, ନୂଆ ନୂଆ କଥା ଶୁଣୁଛନ୍ତି । ମାଷ୍ଟରଙ୍କ ଠାରୁ ଔଷଧ ନେବାକୁ ବହୁତ ଲୋକ ଆସୁଛନ୍ତି । ମାଷ୍ଟରଙ୍କର ଦୁଇ ଦିନ ହେଲା ମୁଣ୍ଡ ବଥାଉ ଥିଲା, ଟିକଏ ଟିକିଏ ମଧ୍ଯ ଜର ହେଉଥିଲା । ଆଜି ଭରି ଜର । ବଡ଼ କମ୍ପ ହେଉଚି, ତା ସଙ୍ଗେ ବଡ଼ ତୃଷା ହେଉଚି । ମଫସଲ ଜାଗା, ବୈଦ୍ୟ ଭଲ ନାହାନ୍ତି, ଔଷଧ ମଧ୍ଯ ମିଳୁନାହିଁ । ସେହିପରି ଜର ଜରରେ ଦୁଇ ତିନି ଦିନ କଟି ଗଲଣି । ରୋଗୀ ବଡ଼ ଦୁର୍ବଳ ଓ ଶ୍ରୀହୀନ ଦେଖା ଗଲେଣି । ମାଳୀ ବୈଦ୍ୟ କହିଲେ ରୋଗ ସନ୍ନିପାତ, ଅବସ୍ଥା ବଡ଼ ଖରାପ । ଗାଁ ଲୋକେ ଯାଇ ଦେଖୁଚନ୍ତି, ବୈଦ୍ୟ ଡାକୁଚନ୍ତି, ରୋଗୀକୁ ଜଗି ରହୁଚନ୍ତି । ଶେଷରେ ଡାକ୍ତର ଡାକିବାକୁ ସମସ୍ତେ ସ୍ଥିର କଲେ । ଡାକ୍ତର ଫିସ୍ ନେବେ ଏବଂ ଔଷଧ ପାଇଁ ଖର୍ଚ୍ଚ ଲାଗିବ । ମାଷ୍ଟରଙ୍କ ବାକ୍ସ ଖୋଜିବାରେ ଅଠର ଅଣା ପଇସା ମିଳିଲା । କାମ ଚଳିବ କିପରି ? ଆଉ ପଇସା ଦେଉଛି କିଏ ? ପଇସା ଯେ କାହା ପାଖେ ନ ଥିଲା ତାହା ନୁହେଁ, ମାତ୍ର ମାଷ୍ଟରେ ଏପରି ଅବସ୍ଥାରୁ ବଞ୍ଚିଲେ ତ ପଇସା ଶୁଝିବେ ? ନ ହେଲେ ପଇସାତକ ତ ଗଲା ! ସମସ୍ତେ ନାହିଁ କଲେ—ତାଙ୍କ ପାଖରେ ଟଙ୍କା ନାହିଁ । କାମ ଚଳିବ କିପରି ?

ବିମଳା ତାର ଦେଢ଼ଶୁର ପୁଅ ରଘୁଠାରୁ ମାଷ୍ଟରଙ୍କ କଥା ସବୁଦିନେ ଦିନକେ ପାଞ୍ଚ ଥର କରି ବୁଝୁଚି । ମନ ବଡ଼ ଅସ୍ଥିର, ତାର ହୃଦୟର ଦେବତା ଏପରି ନିଃସହାୟ ହୋଇ ପଡ଼ିଛନ୍ତି, ସେ ନିଜେ ଯାଇ ପାରୁ ନାହିଁ । କେବଳ ଦିଅଁ ଦେବତାଙ୍କୁ ଡାକୁଚି, ରଘୁଠାରୁ ଶେଷରେ ଯାହା ଶୁଣୁଚି, ସେଥିରେ ତା ଦେହ ଥରି ଉଠୁଚି, ସେ କଣ କରିବ, ଭୁଆଶୁଣୀଟା ମାଷ୍ଟରଙ୍କ ସହିତ ତାର କି ସମ୍ବନ୍ଧ ଅଛି ଯେ ସେ ତାହା ବାହାରେ ଦେଖାଇବ ? ବହୁତ ଭାବିଲା । ସେ ଭରି ଚଞ୍ଚଳ ହେଲା । ତାର ଇଛା, ସେ ମାଷ୍ଟରଙ୍କ ବସାକୁ ଦୌଡ଼ି ଯାନ୍ତା, କଣ କି ଉପାୟ କରି ରୋଗୀକୁ ଭଲ କରିଦିଅନ୍ତା । ଦିଅଁଙ୍କୁ ବହୁତ ମୁଣ୍ଡିଆ ମାରିଲା । ମୁଣ୍ଡର ମଥାମଣିଟି ମୁଣ୍ଡରେ ଲଗାଇ ଦିଅଁଙ୍କ ନାଁରେ ଥୋଇଦେଲା ।

ରଘୁଠାରୁ ଶୁଣିଲା, ମାଷ୍ଟରଙ୍କ ପାଇଁ ଡାକ୍ତର ଡାକିବାର କଥା, ଟଙ୍କା ମିଳୁନି ବୋଲି କେହି ଡାକ୍ତର ଡାକି ଯାଉ ନାହାନ୍ତି । ଏ କଥାରେ ବିମଳା ବଡ଼ ଅସ୍ଥିର ହୋଇ ପଡ଼ିଲା । କଣ କରିବ; ହଠାତ୍ ଦେହରୁ କର୍ଣ୍ଣମାଳଟି ବାହାର କରି ପଡ଼ିଶା ଘରକୁ ଦେଇ କହିଲା, ଏ ମାଳଟି ବନ୍ଧା ରଖି ଟଙ୍କା ଦଶୋଟି

ଦିଅ ! ପଡ଼ିଶା ଘର ଓଜନ ମୂଲ କାଟକସୋର କରି ସାତୋଟି ଟଙ୍କା ଦେଲେ । ବିମଳା ରଘୁ ହାତେ ସେ ସାତୋଟି ଟଙ୍କା ଦେଇ ତରତର କରି ପଠାଇଦେଲା । କହିଲା, "କହିବୁ, ଖୁଡ଼ୀ ମାଷ୍ଟରଙ୍କର ମାଉସୀଝିଅ ଭଉଣୀ । ସେ ଟଙ୍କା ଦେଇଛି, ଡାକ୍ତର ଡାକିବା ପାଇଁ ।"

ଗାଁଲୋକଙ୍କ ଭିତରୁ ଜଣେ ଗଲା ଡାକ୍ତରଖାନାକୁ । ଆଉ ଜଣେ ଗଲା ମାଷ୍ଟରଙ୍କ ଗାଁକୁ ତାଙ୍କ ସ୍ତ୍ରୀଙ୍କୁ ଜଲଦି ଘେନି ଆସିବାକୁ । ଡାକ୍ତରଖାନା ତିନି କୋଶ ବାଟ । ଡାକ୍ତରଖାନାରେ ପହଞ୍ଚି ଡାକ୍ତରଙ୍କୁ ଖବର ଦେବ । ଡ଼ାକ୍ତର ଆସି ରୋଗୀ ଦେଖିବେ । ବହୁତ ଡ଼େରି ହେବ । ରୋଗୀର ଅବସ୍ଥା ବେଳକୁ ବେଳ ମନ୍ଦ ହେଉଛି । କାଲିଠାରୁ ଜର ପ୍ରବଳ । ବର୍ତ୍ତମାନ ଜ୍ଞାନ ନାହିଁ, ମଣିଷ ଚିହ୍ନି ପାରୁ ନାହାନ୍ତି, ଧୀର ସ୍ୱରରେ ଏଆଡ଼ୁ ସେଆଡ଼ୁ କଅଣ ବାଉଳି ହେଉଛନ୍ତି । କିଛି ବୁଝି ହେଉ ନାହିଁ । ଗାଁ ଲୋକେ ଦେହ ଥଣ୍ଡା ହୋଇ ଯାଉଥିବା ଦେଖି ନିଆଁ ଉମ୍ନେଇ କରି ସେକିବାରେ ଲଗିଛନ୍ତି । ଏପର୍ଯ୍ୟନ୍ତ ଗାଁରୁ କେହି ଆସିଲେ ନାହିଁ କି ଡ଼ାକ୍ତର ବି ଆସିଲେ ନାହିଁ । ଲୋକେ ଡ଼ାକ୍ତର ଆସିବା ବାଟକୁ ଚାହିଁ ବସିଚନ୍ତି—ଲୋକଟିଏ ଦେଖିଲେ, ଛତାଟିଏ ଦେଖିଲେ, ସାଇକଲଟିଏ ଦେଖିଲେ 'ହେଇ ଆସିଲେ' ବୋଲି ଭାବୁଛନ୍ତି ।

ଚାହୁଁ ଚାହୁଁ ବେଳ-ଗଡ଼ିଲା ବେଳ ହୋଇଗଲା । ରୋଗୀ ଦେହ ଥଣ୍ଡା । ନିଶ୍ୱାସ କ୍ଷୀଣ ଓ ସ୍ଥିର ହୋଇ ଆସିଲା । ଟିକିଏ ପରେ ଏକାବେଳେ ନିଃଶବ୍ଦ । ଗାଁଲୋକେ 'ଆହା, ଆହା' କଲେ ।

ରଘୁ ଦୌଡ଼ିଯାଇ ବିମଳାକୁ ଏ ଖବର ଦେଲା । ବିମଳା ଯେଉଁଠି ଠିଆ ହୋଇଥିଲା ସେଇଠି ବସିପଡ଼ିଲା । ଆଖିରୁ ଲୁହ ଧାର ଧାର ହୋଇ ବୋହିଗଲା ।

ସାଇ ମାଇପଙ୍କ ଭିତରେ ସେହି ନୂଆ ମାଷ୍ଟର କଥା ସବୁ ଦିନେ ଗପ ପଡ଼ିଛି । ତା ସ୍ତ୍ରୀ ପିଲା କିମିତି ଥିବେ, ମାଷ୍ଟରଟି କେଡ଼େ ଭଲ ମଣିଷଟିଏ, ଆଗରୁ ଡ଼ାକ୍ତର ଡ଼ାକିଥିଲେ ଭଲ ହୋଇଥାନ୍ତା, ରୋଗ ବଳିଗଲା, ଏହିପରି କେତେ କଥାର ଉପର୍ଯ୍ୟୁପରି ଚର୍ଚ୍ଚା ଚାଲିଚି ।

ରଘୁବୋଉ ପାଣି ନେଉ ନେଉ କହିଲେ, "ଆମ ସାନ ଜାଆଟା ତ ମାଷ୍ଟର ମଲା ଦିନୁ କତରଲଗା ହୋଇ ପଡ଼ିଚି, ଆଉ ତା ମା ମାଇପଙ୍କ କଥା କଣ ହେଉ ନ ଥିବ ?"

"ମାଷ୍ଟର ୟାର କଣ କି ?"

"ତା ବୋଉ ୟା ବୋଉ ଦି ସଙ୍ଗାତ ପର ।"

ବିମଳାର ଦେହ ଭଲ ହୋଇଗଲଣି । ଘର ଜଞ୍ଜାଳ ଗତାନୁଗତିକ ଭବରେ କରି ଯାଉଛି । ଆନନ୍ଦର କଥା ତା ହୃଦନ୍ତରରେ ରହି ଯାଇଛି । ଯେତେବେଳେ ମନେ ପଡ଼ୁଚି, ଦୀର୍ଘ ନିଶ୍ୱାସଟିଏ ମାତ୍ର ପକାଉଛି ।

ଗାଧୋଇ ଆସି ଦିଅଙ୍କୁ ମୁଣ୍ଡିଆ ମାରିବା ବେଳେ, ସନ୍ଧ୍ୟାବେଳେ ତୁଳସୀ ମୂଳରେ ଦୀପ ବସାଇବା ବେଳେ, ଗୁଣୁ ଗୁଣୁ କରି କେତେ କଣ ପ୍ରାର୍ଥନା କରେ । ଶେଷରେ କହିବାର ଶୁଣାଯାଏ—

"ମହାପ୍ରଭୁ, ଅଲଗା ତ କରଇଥିଲ । ସେଥିରେ କଣ ମୋ ପାପର ଦଣ୍ଡ ଯଥେଷ୍ଟ ହୋଇ ନ ଥିଲ ? ସେ ବଞ୍ଚିଥିଲେ, ତାଙ୍କ ମୁଖରେ ତାଙ୍କ କଥା ବିପଦ ଶୁଣି, ତାଙ୍କୁ ଟିକିଏ ଦେଖି, ପ୍ରାଣ ଟିକିଏ ଆନନ୍ଦ ପାଉଥିଲ । ଏ ପୂଜା-ଟିକକ, ଏ ଶେଷ କାମନା ଟିକକ ମଧ୍ୟ ପୂରଣ କଲ ନାହିଁ ? ହଁ, ପ୍ରଭୁ, ତୁମ ଇଚ୍ଛା ।"



# ହୃଦୟ ସ୍ମରଣେ

ଶ୍ରୀ ବଂଶୀଧର ମିଶ୍ର, ଝାଞ୍ଜୀଆ ମଙ୍ଗଳା

ବିଜୁଳି ପ୍ରାୟେ ଦାରୁଣ ବାରତା ଗଲା ଜଗତକୁ ମାଡ଼ି
ଅମା ଅନ୍ଧକାର ଘୋଟିଲା ମେଦିନୀ ଆକାଶ ପଡ଼ିଲା ଛିଡ଼ି,
ସମସ୍ତଙ୍କ ଚକ୍ଷୁ ନୀର
ଭାସିଦେଲା ଯେହ୍ନେ ଢାଳିଦେଲା ବାଲି ଆକାଶରୁ ସୁନାଶିର ।

ମିଶ୍ର ଚିନ୍ତାମଣି ପାର୍ବତୀ ଉଦରୁ ବ୍ରାହ୍ମଣ କୁଳେ ସମ୍ଭୂତ
ଧୀରବାଗ୍ମୀବୀର ଚନ୍ଦ୍ରେଶ୍ୱର ମିଶ୍ର ଭବଧାମୁଁ ତିରୋହିତ
କାନ୍ଦନ୍ତି ଯେ ଗଡ଼ବାସୀ
କିଏ ବୁଝାଇବ ଏ ଦୀନ ପ୍ରଜାଙ୍କୁ କୋଳରେ ଧରି ଆଶ୍ୱାସି ।

ଧାଇଁଲେ ଆବେଗେ ତାଙ୍କ ବାସପାଶେ ଲୋକାରଣ୍ୟ ହେଲା ପୁର,
କାହିଁ ଚାଲିଗଲ'କି ବିଧାନ ରଖି ପୁତ୍ରକନ୍ୟା କରି ପର
ଗଡ଼ବାସୀ ମୋହ ତେଜି,
ଚାଲିଗଲ ବୀର ନାମକରିସାର ସମସ୍ତ ମୋହ ବରଜି ।

ପୁତ୍ରକନ୍ୟା ତବ ମୁଣ୍ଡଭୋଡ଼ି ହେଲେ 'ନନା କାହିଁ ଗଲ' କହି;
ଶତ ଚକ୍ଷୁନୀର ପ୍ଲାବିତ କରିଲା ଶ୍ରୀମୁଖକୁ ଚାହିଁ ଦେଇ
କିଏ ଦେଖୁଛି କାହାକୁ,
ସୁଧୀଜନମାନେ କ୍ରନ୍ଦନ କରନ୍ତି ନିରିଖି ଚଉବାହାକୁ ।

ନା ନେତ୍ରପଥରେ ସେ ସୌମ୍ୟ ମୂରତି ପଡ଼ିଥିବ ଅବା କେବେ,
ଅଭୁଲା ହୋଇଣ ପାଶୋରି ନଯିବ ଜୀବ ଥିବାଯାଏ ଜୀବେ
ଆହା କି କୋମଳ ଭାଷା
ଶୁଣିବାକୁ କର୍ଣ୍ଣ ଚଉଦିଗେ ଚାହେଁ ପାଇବାକୁଟି ଭରସା ।

ଭୂଷିତ ଥିଲ ହେ ରଜ ଦରବାରେ ପ୍ରଧାନ ଆସନ ପାଇ
ଯୋଗ୍ୟ ଆସନର ପ୍ରୟୋଗ୍ୟ ପାଳକ ଗଡ଼ିଥିଲେ ପଣ ବିହି
ଦେୱାନ ପଦବୀ ଦେଇ
ରଣପୁର ଗଡ଼େ ପୂଜା କରୁଥିଲେ ରଜାପ୍ରଜା ବେନି ଭଇ ।

ନିଜ ପରିବାର ପରି ପରଜାଙ୍କୁ ପାଳୁଥିଲ ସ୍ନେହ କରି,
କାଳକ୍ରମେ ରଜା ଦ୍ରୋହ ବଢ଼ାଇଲେ ହୋଇଣ ପଣ ଭଗାରି
ପ୍ରାଣ ହୋଇଲା ଅସହ୍ୟ,
ପ୍ରଜାମାନଙ୍କର କୁଶଳ ବାଞ୍ଛିଣ ଛାଡ଼ିଲ ପଦବୀ ମୋହ ।

ଭାଗ୍ୟବିଡ଼ମ୍ବନା ଘୋଟିଲା ନୃପଙ୍କୁ ପ୍ରଜାଙ୍କୁ ଦେଲେ କଷଣ,
ଗଡ଼ବାସୀ ମିଳି କଲେ ପ୍ରଜାମେଳି ଦୁଃଖରେ ଯାପିଲେ ଦିନ,
ଦେଖି ପ୍ରଜାଙ୍କ କଷଣ,
ରଜାଙ୍କ ସହିତ ତର୍କ ଆରମ୍ଭିଲ ପ୍ରଜାଙ୍କ ହିତ ବାଞ୍ଛିଣ ।

ଚାଲିଗଲ ହସି ଦେବଯାନେ ବସି ଶୁକ୍ଳପକ୍ଷେ ଧୀରବର,
ଛାଡ଼ି ଲୀଳାଖେଳା ସଂସାର ଭିତରେ ଏଡ଼େ ବଡ଼ ପରିବାର
ମୋହ ନରଖିଲ ଲବେ,
ନାମ ରଖିଗଲ ଅମର ହୋଇଲ ରହି ବଇକୁଣ୍ଠ ଭବେ ।

ପୁଣ୍ୟାତ୍ମା ପୀଠରେ ବସିଥିବ ଧୀର ଢାଳିବ ଆଶିଷ ବାରି
ପ୍ରଜାପାଟକରେ କୁଟୁମ୍ବ ସହିତେ ଲଭିବେ ଯେସନ ଶିରୀ
ସର୍ବେ ହୋଇଛନ୍ତି ଦୁଃଖୀ,
ଅମରୁ ଝରିଲେ ତବ ଶ୍ରଦ୍ଧାରଶ୍ମି ହୋଇବେଟି ପଣ ସୁଖୀ ।

କରୁଣାସାଗର ଧୀର ପୁରନ୍ଦର ସାହିତ୍ୟର ଗବେଷକ
ବିଦ୍ୟାଦାନ କରି ଉଡ଼ାଇଛ ଧ୍ୱଜା ପାଳି ଯେ କେତେ ବାଳକ
ଘଟିପଞ୍ଚ ଭବେ ରହି
ଉଦ୍ଧାର କରିଛ କେତେ ବିପଦରୁ ନିଜେ ଦୁଃଖ କଷ୍ଟ ସହି ।

ଛାଡ଼ିଗଲ ଗାଦି ପ୍ରଜାଙ୍କୁ ସମ୍ପାଦି ଲେଉ ମୋହମାୟା ଛାଡ଼ି
ନୟାଗଡ଼ ଧାମେ ଆଇଲ ଭବେ ମଥାରେ ପଗଡ଼ି ଭିଡ଼ି,
ଦୀନଦୁଃଖୀଙ୍କର ପାଇଁ
ଲଢ଼ିଲ ମିସିଲେ କେତେ ଯେ ମାମଲା ବାଦୀ ପ୍ରତିବାଦୀ ହୋଇ !

ଅଳପଦିନରେ ଲଭିଲ ତ ଯଶ ପଉରୁଷ ହେଲ ସାର,
ନାକିମ ହୁକୁମା ତରିଲେ ସମସ୍ତେ ଦେଖି ତୁମ୍ଭର ବେଭର
ଗଢ଼େ ରଖିଗଲ ଟେକ
ବିଶ୍ୱର ବିଭଗେ ଗୁଣ ପ୍ରକଟିଲ ନାମ ଜପିଲେଟି ଲୋକ ।

ଆସ ଆସ ଆଜି ଅମରୁ ଓହ୍ଲାଇ ପଡ଼ୁ ପାଦ ଏ ଭୂବନ
ଆଜି ଶ୍ରାଦ୍ଧଦିନେ ଭକ୍ତିପ୍ଳୁତ ମନେ ଅର୍ଘ୍ୟ ଦେଉଛୁ ପୁରଜନ
ତବ ଆଶିଷକୁ ଘେନି
ପୁରପଲ୍ଲୀବାସୀ ରହିଁ ବସିଛନ୍ତି ଦୁଃଖଭଗ୍ନ ଏ ମେଦିନୀ ।

ତ୍ରୈବିଂଶ ବର୍ଷର କ୍ଷୁଦ୍ର ସ୍ମରଣିକା ଆବୃତି ଯୋଗ୍ୟ ହୋଇଲେ
ମଣିବି ସାର୍ଥକ ସେହି ପଦାବ୍ଦରେ ସ୍ଥାନ ମୁଁ ପାଇଛି ଭଲେ
ବନ୍ଧୁବର୍ଗର ସେହି ସ୍ମୃତି,
ଘୋଷି ହୁଏ ମୁଖେ ତବସୁଧାବାଣୀ ଅତୀତର ସବୁ କୃତୀ ।